# ଭୀମଭୋଇ

ଲେଖକ :

ଶ୍ରୀ ଭାଗୀରଥି ନେପାକ୍

ପ୍ରକାଶକ :

ସୁଧାଂଶୁ ପ୍ରକାଶନ
କଟକ-୯

ପରିବେଷକ :

ଶ୍ରୀନିବାସ ଗୁରୁ
ଗୁରୁଜୀ ବୁକ୍‌ଷ୍ଟଲ
କଟକ-୯

ରଙ୍ଗତୁଳୀ :

ସୁନାମଣି ସାମଲ

ପ୍ରଥମ ପ୍ରକାଶ : ୧୯୮୫

ମୁଦ୍ରଣ :

ଭଗବତୀ ପ୍ରିଣ୍ଟର୍ସ
ରାଜାବଗିଚା, କଟକ-୯

ମୂଲ୍ୟ : ଟ. ୩-୦୦

# ଏଥିରେ ଅଛି



———

# ଏହି ଲେଖକଙ୍କ ଅନ୍ୟାନ୍ୟ ରଚନାବଳୀ

୧ । ଭାରତ ପ୍ରଦୀପ ବିବେକାନନ୍ଦ
୨ । ଭାରତ ପ୍ରଦୀପ ନିଗମାନନ୍ଦ
୩ । ଭାରତ ପ୍ରଦୀପ ଶିବାନନ୍ଦ
୪ । ଭାରତ ପ୍ରଦୀପ ଅରବିନ୍ଦ
୫ । ଭାରତ ପ୍ରଦୀପ ଶଙ୍କରାଚାର୍ଯ୍ୟ
୬ । ଭାରତ ପ୍ରଦୀପ ବୁଦ୍ଧଦେବ
୭ । ଭାରତ ପ୍ରଦୀପ ମହାବୀର
୮ । ଭାରତ ପ୍ରଦୀପ ଶ୍ରୀଚୈତନ୍ୟ
୯ । ଭାରତ ପ୍ରଦୀପ ଶ୍ରୀରାମକୃଷ୍ଣ
୧୦ । ଭାରତ ପ୍ରଦୀପ ନାନକ
୧୧ । ଭାରତ ପ୍ରଦୀପ ଭୀମଭୋଇ
୧୨ । ଭାରତ ପ୍ରଦୀପ ମହିମା ଗୋସେଇଁ
୧୩ । ଭାରତ ପ୍ରଦୀପ ବାପୁଜୀ
୧୪ । ଭାରତ ପ୍ରଦୀପ ଗୁରୁଜୀ
୧୫ । ଭାରତ ପ୍ରଦୀପ ନେତାଜୀ
୧୬ । ଭାରତ ପ୍ରଦୀପ ଶାସ୍ତ୍ରୀଜୀ
୧୭ । ଭାରତ ପ୍ରଦୀପ ରାଜାଜୀ
୧୮ । ଭାରତ ପ୍ରଦୀପ ଲାଲ୍‌ଜୀ
୧୯ । ଭାରତ ପ୍ରଦୀପ ରାଧାକୃଷ୍ଣନ୍
୨୦ । ଭାରତ ପ୍ରଦୀପ ଜାକର ହୁସେନ

———

# ଭୀମ ଭୋଇ

(ଖ୍ରୀ ୧୮୫୦-୧୮୯୫)

ସେତେବେଳେ ଭାରତବର୍ଷ ସ୍ୱାଧୀନ ହୋଇ ନ ଥିଲା କି ଓଡ଼ିଶା ପ୍ରଦେଶ ଗଠିତ ହୋଇ ନ ଥିଲା । କଟକ-ପୁରୀ ବାଲେଶ୍ୱର, ଏହି ତିନି ଜିଲ୍ଲାକୁ ମିଶାଇ ଓଡ଼ିଶା ଡ଼ିଭିଜନଟିଏ ଗଠନ କରାଯାଇଥିଲା । ଅନ୍ୟ ଜିଲ୍ଲାରେ ବାସ କରୁଥିବା ଓଡ଼ିଆମାନେ ଛିନ୍ନଛତର ହୋଇ ବିଭିନ୍ନ ପ୍ରଦେଶରେ ଯୋଡ଼ି ହୋଇଥିଲେ । ଦରିଆ ପାରିର ଇଂରେଜ ଶାସକ ଦେଶ ଶାସନ କରୁଥିଲା ।

ସେତେବେଳେ ଅବସ୍ଥା ଭିନ୍ନ ଧରଣର । ସେତେବେଳର ପରିସ୍ଥିତି ମଧ୍ୟ ଭିନ୍ନ ଧରଣର । ଇଂରେଜମାନେ ବନ୍ଧୁକ ଧରି ଶାସନ ଚଳାଉଥାନ୍ତି । ସବୁଠି ଖାଲି ବଡ ବଡ଼ ଇଂରେଜ ଅଫିସର ଗାଦି ମାଡ଼ି ବସି ଯାଇଥାନ୍ତି । ଭାରତବାସୀ ନିଜ ଦେଶ, ନିଜ ମାଟିରେ ବିଦେଶୀ ପାଲଟି ଯାଇଥାଏ । ପାଟି ଫିଟାଇବାର ରାସ୍ତା ନାହିଁ । ବିରୋଧ କଲେ ବନ୍ଧୁକ ଗୁଳି । ଉଁ ଚୁଁ କଲେ ବନ୍ଦୀଶାଳା ।

ଠିକ୍ ଏହିପରି ଏକ ଘଡ଼ିସନ୍ଧିବେଳେ, ଓଡ଼ିଶାର ପୂର୍ବତନ ସୋନପୁର ରାଜ୍ୟର ଜଟାସିଙ୍ଗା ଗ୍ରାମରେ, 'ଭୀମଭୋଇ' ଜନ୍ମ ଗ୍ରହଣ କଲେ । ତାଙ୍କର ବାପାଙ୍କର ନାମ 'ଦନାଇ ଭୋଇ' ଓ ମାତାଙ୍କର ନାମ 'ଗୁରୁବାରୀ' । ସେ ୧୮୫୦ ମସିହା ବୈଶାଖ ପୂର୍ଣ୍ଣିମୀ ଦିନ ଜନ୍ମ ଗ୍ରହଣ କରିଥିଲେ ।

ପିଲାଦିନେ ଭୀମଭୋଇ ଖୁବ୍ କଷ୍ଟରେ ଚଳୁଥିଲେ । କାରଣ ତାଙ୍କର ବାପାଙ୍କର ଜମିବାଡ଼ି କି ଘରଦ୍ୱାର କିଛି ନଥିଲା ।

ସେମାନେ ପତ୍ର କୁଡ଼ିଆରେ ରହୁଥିଲେ । ପରେର ମୂଲ ଲାଗି ଚଳୁଥିଲେ । ମୂଲ ନ ମିଳିଲେ ବଣର ଫଳ ମୂଳ ସଂଗ୍ରହ କରି, ତାକୁ ବିକି ଚଳି ଯାଉଥିଲେ । ବଣର ଆମ୍ବ, ଜାମୁ, ଖଜୁରି, ତାଳ ପ୍ରଭୃତି ଗଛମାନେ ହିଁ ଥିଲେ ସେମାନଙ୍କର ଧନ ସଂପଦ । ଏହି ଗଛମାନଙ୍କର ଫଳ ପାଚିଲେ, ସେମାନେ ତାକୁ ଦେଖି ଖୁବ୍ ଖୁସି ହୋଇ ଯାଉଥିଲେ ।

ଦନାର ଭୋର କାନ୍ଧରେ ଟାଙ୍ଗିଆ ପକାଇ ବଣକୁ କାଠ ଆଣିବାକୁ ଯାଉଥିଲା । କାଠ ବିକି ଦୁ'ପଇସା ରୋଜଗାର କରୁଥିଲା । ଘରେ ଗୁରୁବାରୀ ଜ୍ୟେଷ୍ଠ ପୁଅ ଝାମର ଯତ୍ନ ନେଉଥିଲା । ରନ୍ଧାବଢ଼ା କାମ ସରିଗଲେ, ଶାଳପତ୍ରର ଖଲି ତିଆରି କରି ବା ବଣୁଆ ଘାସର ଗୁଣ୍ଡୁଣି ବୁଣି ବଳକା ସମୟର ଉପଯୋଗ କରୁଥିଲା ।

ଦେଖୁ ଦେଖୁ ବେଳ ସରି ଯାଉଥିଲା । ସଞ୍ଜ ହେଲେ ଦନାର ଓ ଗୁରୁବାରୀ ଏକାଠି ବସି ପୁଅ ଝାମକୁ ଖେଳାଉ ଥିଲେ । ତାର ଭବିଷ୍ୟତ ସଂପର୍କରେ ଅନେକ ଚିନ୍ତା କରୁଥିଲେ । ଝାମ ଟିକିଏ ବଡ଼ ହେଲେ, ତାକୁ ଗାଁ ଅବଧାନ ପାଖକୁ ପାଠ ପଢ଼ାଇବାକୁ ଛାଡ଼ିବେ । ତାକୁ ଅନେକ ପାଠ ପଢ଼ାଇବେ । ପାଠ ପଢ଼ି ସେ ମଣିଷ ହେବ । ସେମାନଙ୍କ ଦୁଃଖ ଯିବ ।

ଆଦିବାସୀ କନ୍ଧ ଘରେ ଝାମଙ୍କର ଜନ୍ମ ।

ଆଦିବାସୀ ଘରର ପୁଅ ଝିଅମାନେ ସେତେବେଳେ ପାଠ ପଢ଼ୁ ନଥିଲେ । ଟିକିଏ ବଡ଼ ହୋଇ ଆସିଲେ, କାମଧାମ କରି ବାପ'ମାଙ୍କୁ ସାହାଯ୍ୟ କରୁଥିଲେ । କିଏ ଗାଈ ଚରାଉଥିଲା ତ, କିଏ ଘାସ କାଟୁଥିଲା । ଆଉ ଟିକିଏ ବଡ଼ ହେଲେ, ଜମିରେ ହଳ ଧରି ମୂଲ ଲାଗୁଥିଲା । ହଳଧରି ପାରିଲେ, ପିଲା ବଡ଼ ହେଲା ବୋଲି

ହିସାବକୁ ଆସୁଥିଲା । ଏଥର ତାର ବିବାହ ପାଇଁ ପାତ୍ରୀ ଖୋଜା ପଡ଼ୁଥିଲା ।

କନ୍ଧ ଘରର ରୀତିନୀତି ଆଉ ପ୍ରକାରେ । ସେମାନେ ସୂର୍ଯ୍ୟ ଦେବତାଙ୍କୁ 'ବୁରାପେନୁ' କହନ୍ତି । ସେ ସବୁ ଦେବତାଙ୍କଠୁ ବଡ଼ । ତାଙ୍କ ସ୍ତ୍ରୀଙ୍କ ନାମ 'ତାରୀ' । ବୁରାପେନୁ ଜଗତର ସୃଷ୍ଟିକର୍ତ୍ତା । 'ତାରୀ' ସେହି ଜଗତର ରକ୍ଷାକର୍ତ୍ତ୍ରୀ । 'ତାରୀ' ଅସନ୍ତୁଷ୍ଟ ହେଲେ, ଗାଁ, କୁଟୁମ୍ବ ଓ ପରିବାରରେ ରୋଗ କଷ୍ଟ ଦେଖାଯାଏ । ତେଣୁ ଦେବଦେବୀମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ଛେଳି, ଘୁଷୁରି, କୁକୁଡ଼ା ବଳି ଦିଆଯାଏ ।

ଖିମର ଦେହ ବିଗିଡ଼ି ଗଲେ, ଦନାର ଓ ଗୁରୁବାରୀ ଖୁବ୍ ବ୍ୟସ୍ତ ହୋଇ ଯାଉଥିଲେ । 'ବୁରାପେନୁ' ଓ 'ତାରୀ'ଙ୍କୁ ଜୁହାର ହୋଇ କହୁଥିଲେ, "ଆମ ଖିମକୁ ଭଲ କରିଦିଅ । ଆମେ ତୁମକୁ କୁକୁଡ଼ା ଦେବୁ ।"

ଖିମର ଜନ୍ମ ଦିନ ଦନାର 'କନ୍ଧ ପୁରୋହିତ'ଙ୍କୁ ଡ଼ାକି ତାର ଭଲ ମନ୍ଦ ଗଣାଇ ଥିଲା । କନ୍ଧ ପୁରୋହିତ 'ଜାନି' ଧ୍ୟାନ ଗଣି କହିଥିଲା, ଖିମ ବଡ଼ ହେଲେ ଖୁବ୍ ବଡ଼ ଲୋକ ହେବ । ସେ କନ୍ଧ ଜାତିର ରଜା ହେବ । ସବୁ ଲୋକ ତା କଥା ମାନି ଚଳିବେ । ରଜାମାନେ ଆଦର କରି ପାଖରେ ବସାଇବେ । ତା'ହାତରେ ପାଠ ଅଛି । ଜନ୍ମର ସାତଦିନ ବେଳକୁ; ତା' ବାଳ କଟାଗଲା । ଦନାର ଓ ଗୁରୁବାରୀ ଶୁଦ୍ଧ ହେଲେ । ଜାତି ଲୋକ ଭୋଜି ଖାଇଲେ । ଏହିପରି ଭିତରେ ଛଅ ମାସ ବିତିଗଲା । ଖିମ ବି' ଖୁବ୍ ମୋଟାସୋଟା ହୋଇ ବଢ଼ିବାକୁ ଲାଗିଲା । କନ୍ଧ ପୁରୋହିତ 'ଜାନି'

ଶିଶୁର ଚେହେରା ଦେଖିଣ ନାଁ ରଖିଲା 'ଭୀମସେନ୍' । ଏତେବଡ଼ ନାଁ ଧରି ଡ଼ାକୁଛି କିଏ ? ସମସ୍ତେ ତାକୁ 'ଭୀମ' ବୋଲି ଡ଼ାକିଲେ ।

ଭୀମ ଖୁବ୍ ଅଲଅଲରେ ବଢ଼ିଲା । ବିବାହର ଅନେକ ବର୍ଷ ପରେ ପୁଅର ମୁଖ ଦେଖି ଦନାର ଓ ଗୁରୁବାରି ଖୁବ୍ ଖୁସି ହୋଇ ଯାଇଥିଲେ । ତା' ମୁହଁରେ ହସ ଫୁଟାଇବାକୁ ଖୁବ୍ ଚେଷ୍ଟା କରୁଥିଲେ । ସେ କାନ୍ଦିଲେ, ବାପ'ମା ବି ଆଖିରେ ଲୁହ ଭରି ଯାଉଥିଲା ।

କେବଳ ଦନାର କି ଗୁରୁବାରି ନୁହେଁ, ଗାଁର ସବୁ ଲୋକ ଭୀମକୁ ଖୁବ ସ୍ନେହ କରୁଥିଲେ ।

## ପିତୃହୀନ ଭୀମ

ସମସ୍ତଙ୍କର ସବୁଦିନ ସମାନ ଯାଏ ନାହିଁ ।

ସୁଖ ଓ ଦୁଃଖ; ଦିନ ଆଉ ରାତି ପରି । ଗୋଟାକ ପଛକୁ ଆଉ ଗୋଟିଆ ଲଗି ରହିଥାଏ ।

ଭୀମକୁ କେନ୍ଦ୍ର କରି ଦନାର ଓ ଗୁରୁବାରିର ସଂସାର ଉଜ୍ଜଳ ପଡ଼ୁଥିଲା । ଭୀମକୁ କିପରି ଭଲ ଭାବରେ ବଡ଼ କରିବେ, ଏହି ତାହା ହିଁ ସ୍ୱାମୀ ସ୍ତ୍ରୀଙ୍କର ଲକ୍ଷ୍ୟ ଥିଲା । ଭଲ ଜିନିଷଟିଏ ପାଇଲେ, ବାପ ମା ଦୁହେଁ ପ୍ରଥମେ ପୁଅ ମୁହଁରେ ଦେଉଥିଲେ । ପୁଅ ହସିଲେ; ଦୁଇ ପ୍ରାଣୀଯାକ ଖୁବ୍ ଖୁସି ହୋଇଯାଉଥିଲେ ।

ଶିଶୁ ଭୀମ ଆସ୍ତେ ଆସ୍ତେ ପେଟାଇ ପେଟାଇ ଗୁରୁଣ୍ଡିବା ଆରମ୍ଭ କଲା । ତା'ପରେ ହାମୁଡ଼ିଲା । ପ୍ରଥମେ 'ମାଁ' 'ବା' ବୋଲି

ଡ଼ାକି, ପରେ ପରେ କଥା କହି ଶିଖିଲା । କାନ୍ଥକୁ ବାଡ଼କୁ ଧରି ଛିଡ଼ା ହେଉ ହେଉ, ନିଜ ଗୋଡ଼ରେ ଏକା ଏକା ଛିଡ଼ା ହେଲା । ତାପରେ ଗୃଲିଲା ଓ ଧାଇଁଲା । ଖାଇବା ପାଇଁ ଅଳି କଲା ।

ଦନାରି ଓ ଗୁରୁବାରୀଙ୍କ ଆନନ୍ଦ ଦେଖେ କିଏ ? ଦୁହିଁଙ୍କ ଗ୍ଧାତି କୁଣ୍ଢେମୋଟ ହୋଇଯାଉଥିଲା । ସେମାନଙ୍କ ଅଭାବୀ ସଂସାରରେ 'ଖିମ' ଥିଲା ମସ୍ତବଡ଼ ସଂପଦ । ଖିମକୁ ନେଇ ସେମାନଙ୍କର ଖୁବ୍ ଗର୍ବ ।

ସ୍ୱାମୀ ସ୍ତ୍ରୀ ଉଭୟେ ମିଶି ପୁଅକୁ ସେମାନେ ଭଲ ଭଲ ବେଶ କରାଉ ଥିଲେ । ତା' ମୁଣ୍ଡରେ ଦେହରେ ଅଧିକା ତେଲ ଟିକିଏ ଲଗାଇ ଗାଧୋଇ ଦେଉଥିଲେ । ମୁଣ୍ଡକୁ ଭଲ ଭାବେ କୁଣ୍ଡାଇ, ଅଣ୍ଟାରେ 'କରିଆ' ଖଣ୍ଡେ ଗୁଡ଼େଇ ସାହି ବୁଲାଇ ଆଣୁଥିଲେ । ବାଟରେ ଗଲା ଅଇଲା ଲୋକ ଖିମକୁ ଗୃହିଁ ପ୍ରଶଂସା କଲେ, ସେମାନଙ୍କ ପେଟ ପୂରି ଯାଉଥିଲା ।

ଏହିପରି ଭାବରେ ଖୁବ୍ ଅଳିଅଳରେ ଖିମ ବଢ଼ି ଗୃଲିଥିଲା । କିନ୍ତୁ ଦିନେ ହଠାତ୍ ସବୁ କଥା ବଦଳି ଗଲା ।

କ'ଣ ହେଲା କେଜାଣି, ହଠାତ୍ ଦନାରିର ଦେହ ଖରାପ ହେଲା । ସେ ଉଠି ବସିପାରିଲା ନାହିଁ । ବିଛଣା ଧରି ପଡ଼ି ରହିଲା । କାମଧାମକୁ ଆଉ ଗଲା ନାହିଁ ।

ଦନାରିର ଅବସ୍ଥା ଦେଖି ଗୁରୁବାରୀର ହାଲୁକ ଶୁଖିଗଲା । ସେ ଗୁଣିଆକୁ ଡ଼କାଇ ଫୁଙ୍କାଝଡ଼ା କଲା । ଦିଅଁ ଦେବତାଙ୍କୁ କେତେ ପ୍ରକାର ମାନସିକ କଲା । ବଇଦ ପାଖରୁ ଔଷଧ ଆଣି ଖୁଆଇଲା । ଦନାରି ପାଇଁ ପଥି ପାଞ୍ଚନ ସିଝାଇଲା ।

କିନ୍ତୁ କାହିଁରେ କିଛି କାମ ହେଲା ନାହିଁ । ହଠାତ୍ ଦିନେ ଦନାର ଆଖି ବୁଜିଦେଲା । ଗୁରୁବାଗି କକର୍ଥନା ହୋଇ କାନ୍ଦିଲା । ମାଆର କାନ୍ଦ ଦେଖି ବାଳକ ଖ୍ରାମ ବି ସହା ଧରି କାନ୍ଦିବାକୁ ଲାଗିଲା । ସେମାନଙ୍କ କାନ୍ଦ ଦେଖି ସାହି ପଡ଼ିଶା ଆସି ହାଜର ହେଲେ । କିନ୍ତୁ ଦନାର ଆଉ ଫେରିଲା ନାହିଁ । ଏତେ ବଡ଼ ସଂସାରରେ ଗୁରୁବାଗି ଓ ଖ୍ରାମକୁ ଏକୁଟିଆ କରି ଆପଣା ବାଟରେ ଚାଲିଗଲା ।

ସାହି ଭାଇମାନେ ଆସି ଦନାରର ମୁହଁକୁ ଲୁଗାରେ ଘୋଡ଼ାଇ ଦେଲେ । ଶୋଇବା ଖଟକୁ ଟେକି ନେଇ ଶ୍ମଶାନରେ ପୋଡ଼ାଇ ଦେଇ ଆସିଲେ ।

ଗୁରୁବାଗିର ବନ୍ଧୁବାନ୍ଧବମାନଙ୍କ ପାଖକୁ ଖବର ପଠା ହେଲା । ଖବର ପାଇ ସମସ୍ତେ ଆସି ଠୁଳ ହେଲେ ।

ରେଢ଼ାଖୋଲ ନିକଟରେ 'କିଚିରି' ଗାଁରେ ଦନାରର ସାନ ଭାଇ 'ଧନେଶ୍ୱର' ଜଣେକ ଘରେ ହଳିଆ ଥିଲା । ବଡ଼ ଭାଇର ମଲା ଖବର ଶୁଣି ସେ ବି ଟଙ୍କା ପଇସା ଯୋଗାଡ଼ କରି ଚାଲି ଆସିଲା ।

ଜଟାସିଙ୍ଘା ଗାଁରେ ଦନାରର ଶୁଦ୍ଧି କାମ ହେଲା । ଧନେଶ୍ୱର ସବୁ ଖର୍ଚ୍ଚ ତୁଲାଇଲା । ସାତ ଦିନରେ ଶେଷ ଶୁଦ୍ଧି କାମ । ସେହିଦିନ ଜାତି ଭାଇମାନେ ଭୋଜି ଖାଇ ନିଜ ନିଜ ଘରକୁ ଚାଲିଗଲେ ।

କନ୍ଧ ଘରେ ବଡ଼ ଭାଇର ମୃତ୍ୟୁ ହେଲେ, ସାନ ଭାଇ ବିବାହ କରି ନଥିଲେ ବଡ଼ ଭାଇର ସ୍ତ୍ରୀକୁ ବିବାହ କରେ । ଜାତି ଭାଇମାନେ

ଏପରି ବିବାହକୁ ସ୍ୱୀକାର କରନ୍ତି । ଜାତି ପ୍ରଥାମତେ, ମୃତ ଦିନାରର ସାନଭାଇ ଧନେଶ୍ୱର ଗୁରୁବାରୀକୁ ବିବାହ କଲା ।

ଏହାପରେ ଗୁରୁବାରୀ ଓ ଖେମ ଜଟାସିଙ୍ଘା ଗାଁ ଛାଡ଼ି ରେଢ଼ାଖୋଲ ନିକଟରେ ଥିବା କନ୍ଧରା ଗାଁକୁ ଚାଲିଗଲେ ।

କନ୍ଧରା ଗାଁରେ ଗୁରୁବାରୀ ପୁଅ ଖେମକୁ ଅବଧାନଙ୍କ ପାଖକୁ ପଠାଇ ପାଠ ପଢ଼ାଇବା ଆରମ୍ଭ କଲା ।

ଖେମର ବୟସ ସେତେବେଳେ ମାତ୍ର ଚାରିବର୍ଷ । କିନ୍ତୁ ସେ ବଢ଼ି ଆଳ ପାଣି ପାଇଥାଏ । ଚାରି ବର୍ଷର ପିଲା, ଛଅ ସାତ ବର୍ଷର ପିଲାଙ୍କଠୁ ବଡ଼ ଦେଖାଯାଉଥାଏ । ତାର ବୁଦ୍ଧି ଶକ୍ତି ବି ପ୍ରଖର । ଅବଧାନଙ୍କ ପାଠ ସଙ୍ଗେ ସଙ୍ଗେ ମନେ ରଖିନିଏ । ତାର ବିଦ୍ୟା ଦେଖି ଅବଧାନେ ଆଶ୍ଚର୍ଯ୍ୟ ହୋଇ ଯାଆନ୍ତି ।

ଦିନେ କନ୍ଧରା ଗାଁରେ ଆଶ୍ଚର୍ଯ୍ୟ ଘଟଣାଟିଏ ଘଟିଲା ।

କୁଆଡ଼ୁ କେଜାଣି, ଜଣେ ଯୋଗୀ ଆସି କନ୍ଧରା ଗାଁରେ ପହଞ୍ଚିଲେ । ସେ ଗେରୁଆ କୌପୀନ ଖଣ୍ଡେ ପିନ୍ଧିଥାନ୍ତି । ମୁଣ୍ଡରେ ଜଟାଥାଏ । ହାତରେ ଖପରା ଖଣ୍ଡେ ଧରି ଭାତ-ଭିକ୍ଷା ମାଗୁଥାନ୍ତି ।

ଯୋଗୀମାନେ ବେଳେ ବେଳେ କନ୍ଧରା ଗାଁକୁ ଆସି ଚାଉଳ, ଟଙ୍କା ପଇସା ଇତ୍ୟାଦି ଭିକ୍ଷା କରନ୍ତି । କିନ୍ତୁ ଏହି ଯୋଗୀ ଅନ୍ନ ଭିକ୍ଷା କରୁଥିବା ଦେଖି ଗାଁ ଲୋକମାନେ ଆଶ୍ଚର୍ଯ୍ୟ ହେଲେ । ପରସ୍ପର ମଧ୍ୟରେ କୁହା ବୋଲା ହେଲେ, ଆଚ୍ଛା ଯୋଗୀ ତ ! ଜାତି ଅଜାତି ନ ବାରି ଭାତ ଭିଖ ମାଗୁଛି ! ପାପକୁ କାହାର ଡର ନାହିଁ ଯେ, ଭାତ ଭିକ ଦେବ ?

ଯୋଗୀ ଜଣକ କିଛି ନ ପାଇ, ହତାଶ ହୋଇ କହିରା ଗାଁରୁ ଫେରିଗଲେ ।

ବାଳକ ଖେମ ଅନେକ ବର୍ଷ ପରେ ଏ କଥା ମନେ ପକାଇ ତାଙ୍କର 'ସ୍ମୃତି ଚନ୍ଦ୍ରାମଣି' ପୋଥିରେ ଲେଖି ଯାଇଛନ୍ତି ।

× × ×

ସେହି କହିରା ଗାଁରେ ଗୁରୁବାରୀ ଆଉ ଦୁଇଟି ପୁଅର ମାଆ ହେଲା ।

ଦୈବ ଯୋଗକୁ ମାଆ ଗୁରୁବାରୀ 'ମାଉସୀ' ପାଲଟି ଗଲେ । ଧନେଶ୍ୱରର 'ଖେମ' ପ୍ରତି ସ୍ନେହ ଆଦର ଲୋପ ପାଇଗଲା । ସ୍ୱାମୀ ସ୍ତ୍ରୀ ଉଭୟେ ମିଶି 'ଖେମ'କୁ କଷ୍ଟ ଦେବାକୁ ଲାଗିଲେ ।

ଖେମ ବାଲ୍ୟକାଳରୁ ପିତୃହରା ହୋଇଥିଲେ । ଏବେ ମା'ର ମମତାରୁ ବ' ବଞ୍ଚିତ ହେଲେ । ସେ ନିଜ ଜୀବନକୁ ବ୍ୟର୍ଥ ମନେ କଲେ । ଘରେ ତାଙ୍କୁ କିଛି ହେଲେ ଭଲ ଲାଗିଲା ନାହିଁ । ମାଡ଼ ଗାଳି ଶୁଣି ଆଉ କେତେ ଦିନ ବା ପଡ଼ି ରହିଥାନ୍ତେ ? ଦିନେ ସେ କହିରା ଗାଁ ଛାଡ଼ି ଚାଲିଗଲେ ।

## ଦୁଃଖ ପରେ ଦୁଃଖ : ଅନେକ ଦୁଃଖ

ଖେମ କାନ୍ଦି କାନ୍ଦି କହିରା ଗାଁ ଛାଡ଼ିଲେ । ଅନେକ ଦିନ ରହିବା ହେତୁ ସେ ଗାଁ ପ୍ରତି ମୋହ ଆସି ଯାଇଥିଲା । ସେ ଗାଁର ରାସ୍ତାଘାଟ, ଗଛ ବୃକ୍ଷ, ସାଥି ସାଙ୍ଗମାନେ ଆପଣାର ହୋଇ ଯାଇଥିଲେ । ସବୁ କିଛି ନିଜର ମନେ ହେଉଥିଲା । ଏବେ ଗାଁ

ଛାଡ଼ି ଚାଲିଗଲାବେଳେ ଖ୍ରୀମଙ୍କ ହୃଦୟକୁ ବାଧିଲା । କିନ୍ତୁ ସେ ବା ଆଉ କରନ୍ତେ କଣ ? ଆଖିରୁ ଧାର ଧାର ହୋଇ ବୋହି ଆସୁଥିବା ଲୁହକୁ ନିଜ ହାତରେ ପୋଛି ପକାଇ, ଏକ ମୁହାଁ ହୋଇ ଆଗକୁ ଚାଲିଲେ ।

କାନିବା ଗାଁରେ ଯେତେକ ଯାକ ସାଙ୍ଗ ସାଥୀ ସମସ୍ତେ ପରିଚିତ । ସେହି ଗାଁକୁ ଛାଡ଼ି ଦେଲେ, ଅନ୍ୟ କୌଣସି ଗାଁରେ କେହି ହେଲେ ଜଣାଶୁଣା ନାହାନ୍ତି ।

କଣ କରିବେ, କେଉଁଠାକୁ ଯିବେ, କିପରି ଚଳିବେ, ଏ କଥା ଖ୍ରୀମ ନିଜେ ବି ଜାଣି ନାହାଁନ୍ତି । ପାଦ ଯେଉଁ ବାଟରେ ଚାଲିଲା, ସେହି ବାଟରେ ଭିଡ଼ ହୋଇଗଲେ ।

ଏହିପରି ଭାବରେ ସେ ଯାଇ କଙ୍କଣ ପଡ଼ା ଗାଁର ଗଉନ୍ତିଆ ଘରେ 'କୁଠିଆ' ରହିଲେ । 'କୁଠିଆ' ଅର୍ଥ କେବଳ ଖାଇପିଇ ରହିବା ଓ ତାର ବଦଳରେ ଘରୋଇ କାମ କରିବା ।

ଖ୍ରୀମଭୋଇ ଏହି ସମୟରେ ଜୀବନର ଅନେକ ନୂତନ ଅଭିଜ୍ଞତା ହାସଲ କଲେ ।

ଖ୍ରୀମଭୋଇଙ୍କୁ ଯେତେବେଳେ ମାତ୍ର ସାତ ବର୍ଷ ବୟସ, ସେ ପିତାମାତାଙ୍କ ସ୍ନେହ ମମତାରୁ ବଞ୍ଚିତ ହୋଇ ଗୃହତ୍ୟାଗୀ ହେଲେ । ଏହି ଅବସ୍ଥାରେ ସେ ଶିଶୁ ଶ୍ରମିକ ଭାବରେ ଜୀବନଯାପନ କରୁଥିଲେ । କେତେବେଳେ କାହାର ଗାଈ ଚରାଉଥିଲେ ତ, କେତେବେଳେ କାହାର ଗାଈ ପାଇଁ ଘାସ କାଟୁଥିଲେ । ଦଉଡ଼ି ବଳିବା, ବିଲ ବାଛିବା, ଗୋବର ଗୋଟାଇବା ଠାରୁ ପାଣି ବୋହିବା, ହଳ

ଧରିବା ପ୍ରଭୃତି ଯାବତୀୟ କାମ କରି ପେଟ ପୋଷୁଥିଲେ । ହାତକୁ କାମ ନ ମିଳିଲେ ବାଳକ ଗ୍ରାମ ଭିକମାଗି ଚଳୁଥିଲେ । ପେଟ ଗୃଖଣ୍ଡକ ପାଇଁ ଜୀବନରେ ସେ କେତେ ଯେ ହଇରାଣ ହରକତ ହୋଇଛନ୍ତି, ତାର ସୀମା ନାହିଁ ।

ଖାଲି ସେତିକି ନୁହେଁ, ମୁଣ୍ଡ ଗୁଞ୍ଜିବାକୁ ବାସ ନ ଥାଏ । ଦିନଯାକ ପରିଶ୍ରମ କରିବା ପରେ ଯାହି ତାହି ଖଣ୍ଡେ ଖାଇ ଦେଇ କାହାର ଓଳି ତଳେ କି ଗଛମୂଳେ ଶୋଇ ପଡ଼ନ୍ତି । ବର୍ଷା ଋତୁରେ କେଉଁ ଏକ ଗୃହସ୍ଥଙ୍କୁ କହି, ତାଙ୍କର ପିଣ୍ଡା ଉପରେ ଗଡ଼ି ଯାଆନ୍ତି । କିଏ ଯାଚି କରିଦେଲେ, ଲୁଗା ପିନ୍ଧନ୍ତି । ନ ହେଲେ ଛିଣ୍ଡା ମଇଳା କନା ଖଣ୍ଡେ ଗୁଡ଼େଇ ହୋଇ ରହନ୍ତି । ଶୀତ, ଖରା, ବର୍ଷା ସବୁ ସହି ପଡ଼ି ରହନ୍ତି । ଏସବୁ ସହି ସହି ତାଙ୍କ ଦେହ ପଥର ପାଲଟି ଯାଇଥାଏ ।

କାଙ୍ଗାଳି ପିଲା ବୋଲି ଯଦି କେହି ଦୂର୍ ଦୂର୍ କରେ, ସେ ନୀରବରେ ଆଡ଼େଇ ହୋଇଯାନ୍ତି । କାହାରି ଉପରେ ରାଗ ରୋଷ ତାଙ୍କର ନଥାଏ । ବଞ୍ଚିବା ହିଁ ତାଙ୍କ ପାଇଁ ବଡ଼ ସମସ୍ୟା ହୋଇ ଦେଖା ଦେଇଥାଏ । ଏପରି ଅବସ୍ଥାରେ କାହାରି ଉପରେ ରାଗରୋଷ କରି ଲାଭ କଣ ?

ନିଜର ବାପ ମା ଯେତେବେଳେ ନିଜର ନ ହୋଇ ପର କରିଦେଲେ, ସେତେବେଳେ ପର ପାଖରେ ଅଭିମାନ କରି କଣ ବା ଲାଭ ହେବ ? ସକାଳ ପାହିଲେ, ହୁଏ ତ ତାଙ୍କରି ପାଖକୁ ଗୋଡ଼ି ଟେକିବାକୁ ଯିବାକୁ ପଡ଼ିପାରେ । ଅଭିମାନ କଲେ ବା ରାଗ ରୋଷ କଲେ, କାମ ନ ଦେଇ ଫେରାଇ ଦେବେ । ମୂଲ ନ ମିଳିଲେ ଚଳିବ କେମିତି ?

ସେତେବେଳେ ଖ୍ରୀମଙ୍ଗେଇଙ୍କୁ ଜୀବନଟା ଜଞ୍ଜାଳ ମନେ ହେଲା । ସେ ଭାବିଲେ, ସେ ନିଜେ ସମସ୍ତଙ୍କର ବୋଝ ପାଲଟି ଯାଇଛନ୍ତି । ତାଙ୍କ ଦ୍ଵାରା ଏ ସଂସାରର କାହାରି କିଛି ଉପକାର ହେବ ନାହିଁ । ସେ ବଞ୍ଚି ରହି ଲାଭ ନାହିଁ । ଏକାନ୍ତରେ ଆଖିରୁ ଲୁହ ଗଡ଼ାଇ ଗଡ଼ାଇ, ଭଗବାନଙ୍କ ଉଦ୍ଦେଶ୍ୟରେ କହିଲେ; ଏପରି ଏକ ଅଦରକାରି ଜୀବକୁ କାହିଁକି ଜନ୍ମ ଦେଲ ଭଗବାନ ? ଏହା ଦ୍ଵାରା ଆପଣଙ୍କର କେଉଁ ଉଦ୍ଦେଶ୍ୟ ପୂରଣ ହେଲା ? ମୋତେ ଜନ୍ମ ଦେଇ ନ ଥିଲେ କଣ ଚଳି ନଥାନ୍ତା ? ମୁଁ କାହାରିର ହୋଇ ପାରିଲି ନାହିଁ । ପରିବାରର ଲୋକେ ପରର ହେଲେ । ସ୍ତ୍ରୀ, ଭାଇ ବା ବନ୍ଧୁର ସ୍ନେହ ପାଇଲି ନାହିଁ । ରହିବାକୁ ବାସ ନାହିଁ । ପେଟକୁ ଗ୍ରାସ ନାହିଁ । ସକାଳ ପାହିଲେ ଆଧାର ପାଇଁ ଦରିଦ୍ର ହେଉଛି । ଏପରି ଏକ ଜୀବନ ଧରି ଲାଭ କ'ଣ ?

ଏହାପରି ଦିନେ ନିରୋଳାରେ କାନ୍ଦି କାନ୍ଦି ଖ୍ରୀମ ହଠାତ୍ ଠିକ୍ କଲେ, ଜୀବନ ହାରିଦେବେ । କେହି କିଛି ଜାଣିପାରିବେ ନାହିଁ । ବଣ ଜଙ୍ଗଲରେ ପଶି କେଉଁ ଗଛଡାଳରେ ଦଉଡ଼ି ଦେଇ ପ୍ରାଣ ତ୍ୟାଗ କରିବେ । ତାପରେ ବଣର ପଶୁପକ୍ଷୀଙ୍କର ଆଧାର ହେବେ । ତାଙ୍କର ନାଁ । ସବୁଦିନ ପାଇଁ ପୋଛି ହୋଇଯିବ । ନ ହେଲେ, କୂଅଁ ପୋଖରୀରେ ବୁଡ଼ି ମରିବେ । ଦେଖିଲେ କଥା ସରିଲା । ରହିବା ପାଇଁ କି ଖାଇବା ପାଇଁ, ବାରଦ୍ଵାର ଗୁଣ୍ଡିପିଣ୍ଡା ହେବାକୁ ପଡ଼ିବ ନାହିଁ । ଗାଁର ଚିହ୍ନା ଲୋକମାନେ କହିବେ, ବାଉବୁଲା ଖ୍ରୀମ ଗାଁ ଛାଡ଼ି କୁଆଡ଼େ ଚାଲିଗଲା । କିଛି ଦିନ ସେମାନଙ୍କ ମଧ୍ୟରେ ଆଲୋଚନା ଚାଲିବ । ତା'ପରେ ସବୁ କଥା ଭୁଲି ହୋଇଯିବ ।

ଖ୍ରୀମ ଭାବିଲେ, ବାପ ଦିନାଇ ଖେଇ ବଞ୍ଚିଥିଲେ ତାଙ୍କୁ ଏତେ ହୀନସ୍ତା ହେବାକୁ ପଡ଼ି ନ ଥାନ୍ତା । ସେ ନାହିଁ ବୋଲି ଏତେ

ଦଶା ପଡ଼ିଲା । ବାପ ସଙ୍ଗରେ ଏକାଠି ଚାଲି ଯାଇଥିଲେ ଏ ଅରକ୍ଷିତ ଜୀବନରୁ ରକ୍ଷା ମିଳିଥାନ୍ତା !

କିନ୍ତୁ ତାହା କି ସମ୍ଭବ ?

ଖ୍ରୀମ ଜୀବନ ହାରିବାକୁ ଠିକ୍ କରି କହୁଥିବାଠୁ ଆଗକୁ ଯାଇ ଅଟକି ଗଲେ ।

କିଏ ଯେପରି କାନେ କାନେ କହୁଛି, ଜାଣି ଶୁଣି ଜୀବନ ହାରି ଦେବା ଭଲ ନୁହେଁରେ ଖ୍ରୀମ ! କେଉଁ ଜନ୍ମର କେଉଁ ପାପରୁ ଏ ଦଶା ଭୋଗ କରୁଛୁ କେଜାଣି ! ଆତ୍ମହତ୍ୟା ମହାପାପ । ଏ ପାପର ପ୍ରାୟଶ୍ଚିତ୍ତ ନାହିଁ । ପର ଜନ୍ମରେ ନର୍କର କୀଟ ହେବାକୁ ପଡ଼ିପାରେ । ଏ ଜୀବନ ତୋର ନୁହେଁ, ଭଗବାନଙ୍କର; ଯିଏ ଜୀବନ ଦେଇଛି, ସେ ସେହି ଜୀବନ କଥା ବୁଝିବ । ଚାହିଁଲେ ରହିବ, ଚାହିଁଲେ ନେବ । କର୍ମ ଋଣ ବୋଲି କଷ୍ଟ ସହୁଛୁ । ଏ କଷ୍ଟ ସହି ନେଲେ, କାଲିକି ହୁଏତ ସୁଖ ଭୋଗ ଅଛି ।

ଖ୍ରୀମ ଭୋଇ ଏ କଥା ଶୁଣି ଚମକି ଉଠିଲେ । ଭାବିଲେ ଆରେ ସତେ ତ ! ଶରୀରର ଅଧିକାରୀ ମଣିଷ ହେଲେ ହେଁ ଜୀବନର ଅଧିକାରୀ ଈଶ୍ୱର । ଈଶ୍ୱରଙ୍କ ଜିନିଷକୁ ନିଜ ହାତରେ ନଷ୍ଟ କରିବା ଭଲ ନୁହେଁ ।

ସେତେବେଳେ ଆକାଶର ଚନ୍ଦ୍ର ତାରାମାନେ ତାଙ୍କ ଆଡ଼କୁ ଅନାଇ ରହିଥାନ୍ତି । ତାରାମାନେ ମିଟି ମିଟି ଆଖିରେ ପରସ୍ପରକୁ ଚାହିଁ କଥାବାର୍ତ୍ତା କରୁଥାନ୍ତି, ଖ୍ରୀମଟା ପାଗଳ ହୋଇଗଲା ନାଁ କ'ଣ !

ଖ୍ରୀମ ସେଇଠୁ ବାଟ ଘେନି ଗାଁ ଆଡ଼କୁ ମୁହାଁଇଲେ । ଗାଁ ମୁଣ୍ଡ ବରଗଛ ତଳେ ବାରବୁଲା କୁକୁର ଓ ବାଟଭୁଲା ଗାଈମାନେ ବଖାଇ ଯାଇଥାନ୍ତି ।

ଖ୍ରୀମ ଦେଖି ଭାବିଲେ, ଏମାନେ ବି ତାଙ୍କ ପରି ଅସହାୟ । ଗାଁ ମୁଣ୍ଡର ବରଗଛ ଏମାନଙ୍କର ଆଶ୍ରୟ । ତଥାପି ଏମାନେ ମରିବାକୁ ଇଚ୍ଛା କରୁ ନାହାନ୍ତି ତ ! ଖ୍ରୀମ ଯାଇ ସେମାନଙ୍କ ପାଖରେ ଛିଡ଼ା ହେଲେ ଓ ସେମାନଙ୍କୁ ପଚାରିବାକୁ ଚାହିଁଲେ, ତୁମ ଜୀବନର ରହସ୍ୟ କଣ ? ଶୀତ କାକରରେ ପଡ଼ି ରହିଛ । ଆହା କରିବାକୁ କେହି ନାହିଁ । ତଥାପି ବଞ୍ଚି ରହିଛ କାହିଁକି ? କିନ୍ତୁ ପରକ୍ଷଣରେ ତାଙ୍କର ମନେ ପଡ଼ିଲା । ପଶୁଜାତି ମଣିଷ ପରି କଥା କହି ପାରନ୍ତି ନାହିଁ । ସେମାନଙ୍କୁ ଜୀବନର ରହସ୍ୟ ପଚାରି ଲାଭ କଣ ?

ତେବେ ଏହି ପଶୁମାନେ ଏତେ ଦୁଃଖ କଷଣ ପଡ଼ିଲେ ବି' ମରିବାକୁ ଚାହିଁ ନାହାନ୍ତି । ସେମାନଙ୍କ ମୁହଁରେ ଭାଷା ନାହିଁ । ଯେତେ ଯାହା କଷ୍ଟ ପଡ଼ିଲେ ବି' ମୁହଁ ଫିଟାଇ ପ୍ରତିବାଦ କରିପାରୁ ନାହାନ୍ତି । ସେ କଣ ଏମାନଙ୍କଠୁ ହୀନ ?

ଖ୍ରୀମ ଶେଷରେ ଠିକ କଲେ, ସେ ବି ବଞ୍ଚିବେ । ବଞ୍ଚିରହି ଈଶ୍ୱରଙ୍କ ଇଚ୍ଛା ପୂରଣ କରିବେ । ପାରୁପର୍ଯ୍ୟନ୍ତ କାମ କରିବେ । ନିଜର ପେଟ ପାଇଁ ଓ ଅନ୍ୟର ମଙ୍ଗଳ ପାଇଁ କାମ କରିଯିବେ । ଏହିପରି କାମ କରୁ କରୁ ଦିନେ ସ୍ୱାଭାବିକ ଭାବରେ ମୃତ୍ୟୁ ଲାଭ କରିବେ । ତାଙ୍କର ବାପ ଦନାର ଶେଷରେ ଚାଲିଗଲେ । ତାଙ୍କ ସଙ୍ଗରେ କେହି ଗଲେ ନାହିଁ । କେହି କାହା ସଙ୍ଗରେ

ଯାଆନ୍ତି ନାହିଁ । ବେଳ କାଳ ପୂରିଗଲେ ମଣିଷ ଏକା ଏକା ଅଜଣା ପୁରକୁ ଚାଲିଯାଏ । ଦୁନିଆଁରେ କେହି ସବୁଦିନ ପାଇଁ ବଞ୍ଚି ନାହିଁ କି ବଂଚି ପାରିବ ନାହିଁ । ଏହିପରି ଅନେକ ଲୋକ ଯାଇଛନ୍ତି, ଅନେକ ଲୋକ ଜନମ ପାଇ ଆସିଛନ୍ତି ।

ଏହି ଦୁନିଆ ରହିଛି, ଦୁନିଆର ଚନ୍ଦ୍ର ସୂର୍ଯ୍ୟ ରହିଛି । ସେହି ପାଣି ପବନ, ଶୀତ ବର୍ଷା ଖରା ରହିଛି । ଯିଏ ଗଲା, ସିଏ ଗଲା ଓ ତାର ଗଲା ।

ଖ୍ରୀମ ଖୋଇ ଏଥର ଲମ୍ବା ଲମ୍ବା ପାଦ ପକାଇ ଫେରିବାକୁ ଲାଗିଲେ ଓ ଗାଁ ଗଉନ୍ତିଆଁ ଚୈତନ୍ୟ ପ୍ରଧାନ'ଙ୍କ ବଡ଼ ପିଣ୍ଡାରେ ଶୋଇ ପଡ଼ିଲେ ।

## ଚୈତନ୍ୟ ପ୍ରଧାନଙ୍କ ସଙ୍ଗେ ଭେଟ ।

କି ଯୋଗରେ ରାତି ପାହିଥିଲା କେଜାଣି, ସେ ଦିନ ଚୈତନ୍ୟ ପ୍ରଧାନଙ୍କ ସଙ୍ଗେ ଭେଟ ହେଲା ।

ଚୈତନ୍ୟ ପ୍ରଧାନ ଥିଲେ ଗାଁର ଗଉନ୍ତିଆ । ଅନେକ ଜମିବାଡ଼ି ହଳହଳିଆ । କିନ୍ତୁ ଧର୍ମ ମାର୍ଗର ଲୋକ । ପୁରାଣ ଚର୍ଚ୍ଚା କରନ୍ତି । ସାଧୁମାନଙ୍କୁ ସମ୍ମାନ ଦିଅନ୍ତି ।

ଚୈତନ୍ୟ ପ୍ରଧାନ ଅରକ୍ଷିତ ଖ୍ରୀମ ଖୋଇଙ୍କୁ 'କୁଠିଆ' କରି ରଖିଲେ ।

ଘରେଇ କାମ କରୁ କରୁ ଖ୍ରୀମ ଚୈତନ୍ୟ ପ୍ରଧାନଙ୍କ ପୁରାଣ ପାଠ, ଧର୍ମ ଚର୍ଚ୍ଚା ଶୁଣନ୍ତି । ଭାଗବତର ପଦସବୁ ଘୋଷି ଘୋଷି

ମୁଖସ୍ଥ କରି ନଅନ୍ତି । ସଞ୍ଜ ହେଲେ ଗାଁର ଭାଗବତ ଘର ପିଣ୍ଡା ତଳେ ଯାଇ ବସନ୍ତି । ସବୁ ଗୀତ ଶୁଣନ୍ତି । ସବୁ ଆଲୋଚନା ଶୁଣନ୍ତି । ଶୁଣି ଆସିଥିବା ଗୀତ ସବୁ ଗୁଣୁ ଗୁଣୁ କରି ଗାଆନ୍ତି ।

ଖ୍ରୀମ ଭୋଇଙ୍କ ମଧୁର କଣ୍ଠ । ତାଙ୍କ ମୁହଁର ଗୀତ ମିଠା ଲାଗେ । ଚୈତନ୍ୟ ପ୍ରଧାନଙ୍କ ଗାଈ ଚରାଇଲା ବେଳେ, ବଣ ଜଙ୍ଗଲରେ ବୁଲୁ ବୁଲୁ ଗୀତ ଗାଆନ୍ତି । ସାଥୀ ସାଙ୍ଗମାନେ ତାଙ୍କ ଗୀତ ଶୁଣିବାକୁ ଏକାଠି ହୁଅନ୍ତି । ସେଇଠି ଖ୍ରୀମ ସେମାନଙ୍କ ସଙ୍ଗେ ଧର୍ମ ଚର୍ଚ୍ଚା କରି ବୁଝାଇ ଦିଅନ୍ତି—ସତ କହିବା ଭଲ । ମିଛ କହିଲେ ପାପ ହୁଏ । ପରର ସେବା କଲେ ପୁଣ୍ୟ ହୁଏ । ଆହୁରି କେତେ କଣ ।

ଦିନେ ଧର୍ମ ପରାୟଣ ଚୈତନ୍ୟ ପଧାନ ଖ୍ରୀମ ଭୋଇଙ୍କ ମୁହଁରୁ ଭାଗବତ ଗୀତ ଶୁଣି ମୁଗ୍ଧ ହେଲେ । ସେ ଅକ୍ଷର ଚିହ୍ନି ଥିବା ଜାଣି ଭାଗବତ ପୋଥି ଧରାଇ କହିଲେ, ତୁମେ ଗାଅ । ମୁଁ ଶୁଣିବି । ଗାଇଲା ବେଳେ ପଦହୁଡ଼ି ହୋଇଗଲେ ସଙ୍ଗେ ସଙ୍ଗେ ବତାଇ ଦେଲେ ।

ପରମ ବୈଷ୍ଣବ ଚୈତନ୍ୟ ପଧାନଙ୍କ ମନରେ ସାନବଡ଼, ଜାତି ଅଜାତି ଭାବ ନଥିଲା । ସେ ସେକଥା ଖ୍ରୀମ ଭୋଇଙ୍କୁ ବୁଝାଇ ଦେଇଥିଲେ । କହୁଥିଲେ, ସଂସାରରେ ସବୁ ମଣିଷ ସମାନ । ସାନ ବଡ଼ କଥା, ଏହି ମଣିଷ ତିଆରି କରିଛି । ଭଗବାନଙ୍କ ଆଖିରେ ସମସ୍ତେ ସମାନ । ସମସ୍ତେ ତାଙ୍କର ପୁଅ ଝିଅ । ଭକ୍ତିରେ ସେ ବଶ ହୁଅନ୍ତି । ଧନ ନୁହେଁ, ମଣିଷର ମନର ଭାବକୁ ହିଁ ସେ ଗ୍ରହଣ କରନ୍ତି । ଏହାପରି ଆହୁରି ଅନେକ କଥା ।

ଚୈତନ୍ୟଙ୍କ କଥା ଭୀମ ଭୋଇଙ୍କୁ ଅମୃତ ପରି ମନେ ହେଉଥିଲା । ସେତ ଅବା ସେ ବଞ୍ଚିବା ପାଇଁ ଏହିପରି ଜଣେ ଭଲ ଲୋକର ଆଶ୍ରୟ ଖୋଜୁଥିଲେ । ଅନେକ ବର୍ଷ ପରେ ସେପରି ଜଣେ ଲୋକ ମିଳିଗଲେ ।

ଭୀମ ଭୋଇ ଖୁସି ହେଲେ । ସେ ସୁଖରେ ରହିଲେ ।

କ୍ରମେ ଭୀମ ଭୋଇଙ୍କ ସଙ୍କୋଚ ଭାବ ବି କଟିଗଲା । ସେ ଚୈତନ୍ୟଙ୍କ ସଙ୍ଗରେ ମିଶି ଧର୍ମ ଚର୍ଚ୍ଚା କରିବାକୁ ଲାଗିଲେ । ଜଗନ୍ନାଥ ଦାସଙ୍କ ଭାଗବତ, ବଳରାମ ଦାସଙ୍କ ରାମାୟଣ, ସାରଳା ଦାସଙ୍କ ମହାଭାରତ ପଢ଼ା ଚାଲିଲା । ଆହୁରି କେତେ କଣ ପୋଥି ଅଣାଯାଇ ପଢ଼ାଗଲା । ଖରାଦିନ ଆସିଲେ, ସାରା ଖରାବେଳଟା ପୋଥି ଆଲୋଚନାରେ କଟିଗଲା । ଚୈତନ୍ୟ ପଧାନ ଭୀମ ଭୋଇ ଉଭୟେ ଏଥିରୁ ଉପକୃତ ହେଲେ ।

ଚୈତନ୍ୟ ପଧାନ ଭୀମ ଭୋଇଙ୍କୁ ଆଉ 'ହଳିଆ' ଦୃଷ୍ଟିରେ ଦେଖିଲେ ନାହିଁ । ପାଖରେ ବସାଇଲେ ଓ ଘର ମଣିଷ ପରି ପାଳନ କଲେ । କାମଧନ୍ଦା ପାଇଁ ଆକଟ କଲେ ନାହିଁ । ଭୀମ ଭୋଇ କ୍ରମେ ଚୈତନ୍ୟ ପଧାନଙ୍କ ବନ୍ଧୁ ପାଲଟି ଗଲେ ।

ଭୀମ ଭୋଇଙ୍କର ବୟସ ବଢ଼ୁଥିଲା । ବୟସ ବଢ଼ିବା ସଙ୍ଗେ ଅଭିଜ୍ଞତା ବି ବଢ଼ୁଥିଲା । ବୟସ ତୁଳନାରେ ସେ ଅଧିକ କଥା ଚିନ୍ତା କରୁଥିଲେ ।

ଯିଏ ଦୁଃଖ ଭୋଗ କରିଛି, ସେ କେବଳ ଦୁଃଖୀର ବ୍ୟଥା ବୁଝିପାରେ ।

ଭୀମ ଭୋଇ ଦେଖିଲେ, ଦୁନିଆରେ ଦୁଃଖର ଘର ବଢ଼ୁଛି । ଦଳେ ସ୍ୱାର୍ଥପର ଧନୀ ଲୋକ, ଚଳିଆ ଲୋକଙ୍କୁ ବାର ହିନସ୍ତା କରୁଛନ୍ତି । ଜାତି ଅଜାତିର ପାଚେରି ବେଢ଼ା ଚାଲିଛି । ବ୍ରାହ୍ମଣମାନେ ସମାଜରେ ନିଜର ବଡ଼ପଣ ଜାହିର କରୁଛନ୍ତି ! କିଛି ନ ଜାଣି ନିଜକୁ ପଣ୍ଡିତ ବୋଲି ଦେଖାଇ ଦେଉଛନ୍ତି । ସାମାଜିକ ପର୍ବପର୍ବାଣି ଓ ମୃତ କାର୍ଯ୍ୟରେ ପୁରୋଧା ସାଜି, ଲୋକଙ୍କୁ ଚଳିତଳାନ୍ତ କରୁଛନ୍ତି । ମିଛ କହି ଦଳେ ଲୋକ ମୂର୍ଖ ଲୋକଙ୍କୁ ମିଛବାଟ ଦେଖାଉଛନ୍ତି । ପାପପୁଣ୍ୟର କଦର୍ଥ କରା ହେଉଛି । ଦିନକୁ ଦିନ ନୂଆ ନୂଆ ଦେବଦେବୀ ଜନ୍ମ ହେଉଛନ୍ତି । ନିମ୍ନ ଶ୍ରେଣୀର ଲୋକଙ୍କୁ ଗାଁ ମୁଣ୍ଡରେ ରଖା ହେଉଛି । ସେମାନେ ଭୟରେ ଗାଁ ଭିତରକୁ ପଶି ପାରୁନାହାନ୍ତି । ଦେଉଳ ମନ୍ଦିର ସେମାନଙ୍କ ପାଇଁ ମନା ହୋଇଛି ।

ଏସବୁ ଅବସ୍ଥା ଦେଖି, ଭୀମ ଭୋଇଙ୍କ ହୃଦୟ କାନ୍ଦିଲା । ସେ ବୁଦ୍ଧି ଖଟାଇ ଦେଖିଲେ, ସବୁ ଅଘଟଣ ମୂଳରେ ଶୋଷଣ କରିବାର ଉପାୟ ମିଶିଛି । ଧର୍ମ ନାମରେ ଅଧର୍ମ ଚାଲିଛି । ଅଥଚ ଲୋକମାନେ ପ୍ରତିରୋଧ କରି ପାରୁ ନାହାନ୍ତି । ମୁହଁ ଥାଇ ବି, ସେମାନେ ମୂକ ପାଲଟି ଯାଇଛନ୍ତି । କଥା କଥାକେ ଲୋକଙ୍କୁ ଜାତିରୁ ବାସନ୍ଦ କରି ଯାଉଛି, କଥା କଥାକେ ନିଆଁ ପାଣି ବନ୍ଦ ହୋଇ ଯାଉଛି । କିନ୍ତୁ ଟଙ୍କା ପଇସା ଦେଲେ, ଅଜାତିଆ ଲୋକ ଜାତକୁ ଫେରି ଆସୁଛି । ବ୍ରାହ୍ମଣ ହାତରେ ପ୍ରାୟଶ୍ଚିତ୍ତ କରାଇ ପାପୀ ପୁଣ୍ୟବନ୍ତ ହୋଇ ପାରୁଛି ।

ଭୀମ ଭୋଇ ଦେଖିଲେ, ସମାଜର ଖୁବ୍ କମ୍ ଲୋକ ସମାଜର ବଡ଼ ପଣ୍ଡା ସାଜି ବସିଛନ୍ତି । ସେମାନଙ୍କ କଥା ବେଦ

ହେଉଛନ୍ତି । ସେମାନଙ୍କ ନିଷ୍ପତ୍ତି କାଏମ ହେଉଛନ୍ତି । ସେମାନେ ଏପରି ଉପାୟ ଖଞ୍ଜିଛନ୍ତି ଯେ, ସବୁଲୋକ ସେମାନଙ୍କ ପାଖକୁ ଧାଉଁଛନ୍ତି । ଅତି ଅଳ୍ପ ଲୋକ, ସେମାନଙ୍କ ଅପେକ୍ଷା ଶହ ଶହ ଗୁଣ ଅଧିକ ଲୋକଙ୍କୁ ଅଡ଼ୁଆରେ ପକାଇ ଶୋଷଣ କରୁଛନ୍ତି ।

ଭୀମ ଭୋଇଙ୍କ ମନ ଏସବୁ କଥା ଭାବି ବିଦ୍ରୋହୀ ହୋଇ ଉଠିଲା ।

କିନ୍ତୁ ସେ କରିବେ କଣ ? ତାଙ୍କ କଥା କିଏ ବା ଶୁଣିବ ? ସେ ଯେ ଜାତିରେ କନ୍ଧ ! କନ୍ଧ ଲୋକର କଥାରେ ଓଜନ କଣ ? ତାଙ୍କ ଜାତିର କନ୍ଧ ଲୋକମାନେ କୋଉ ଭଲରେ ଚଳୁଛନ୍ତି ଯେ ? ପର୍ବ ପର୍ବାଣିରେ ମଦ ନିଶାରେ ଢୁଳାଉଛନ୍ତି । ଦେବ ଦେବୀଙ୍କୁ ସନ୍ତୁଷ୍ଟ କରିବା ପାଇଁ ପଶୁପକ୍ଷୀଙ୍କୁ ବଳି ଦେଉଛନ୍ତି । ମୃତାହ କାମଟିଏ ପଡ଼ିଲେ ଡଳଡଳାନ୍ତ ହୋଇ ଯାଉଛନ୍ତି । ଋଣରେ ସମସ୍ତେ ବୁଡ଼ିଛନ୍ତି । ଆଦାୟ ତୁଳନାରେ ଅନେକ ଖର୍ଚ୍ଚ । ସେମାନଙ୍କ ତୁଳନାରେ ଅନେକ ଖର୍ଚ୍ଚ । ସେମାନଙ୍କ ଭିତରେ ଅନେକ ଅନ୍ଧ ବିଶ୍ୱାସ, ଅନେକ କୁସଂସ୍କାର । ସେସବୁ ଦୂର ନ ହେଲେ ସେମାନଙ୍କ ଉନ୍ନତି ଅସମ୍ଭବ ।

ବେଳେ ବେଳେ ଭୀମ ଭୋଇ ଓ ଚୈତନ୍ୟ ପଧାନଙ୍କ ଭିତରେ ଏସବୁ ବିଷୟରେ ଚର୍ଚ୍ଚା ହୁଏ । ଦୁହେଁ ବୁଝନ୍ତି, ବଡ଼ ବଡ଼ଆମାନେ ଭଲଆ ଲୋକଙ୍କୁ ଠକୁଛନ୍ତି ।

କିନ୍ତୁ ଦେବା ଦେବୀଙ୍କ କଥା ପଡ଼ିଲେ, ଚୈତନ୍ୟ ପଧାନ କିଛି ନ କହି ନୀରବ ରହନ୍ତି ।

ଭୀମ ଭୋଇ ମନେ ମନେ ଜାଣି ଯାଆନ୍ତି, ଚୈତନ୍ୟ ପଧାନଙ୍କର ମଧ୍ୟ ଅନ୍ଧବିଶ୍ୱାସ ଅଛି । ହିନ୍ଦୁମାନଙ୍କର ସମସ୍ତ ଦେବ-

ଦେବୀଙ୍କ ଉପରେ ତାଙ୍କର ଅଗାଧ ବିଶ୍ୱାସ । ତେଣୁ ସେ ନୀରବ ରହିବା ଉଚିତ ମନେ କରନ୍ତି ।

## ଭୀମଙ୍କର ଜୀବନ ରକ୍ଷା

ଭୀମ ଭୋଇ ଘରେ କାମଧାମ ନଥିଲେ ଚୈତନ୍ୟ ପ୍ରଧାନଙ୍କ ଗାଈ ବଳଦ ଚରାଇବାକୁ ବଣକୁ ଯାଆନ୍ତି । ମନ ଖୁସି ଥିଲେ ଗୀତ ଗାଆନ୍ତି । ସାଙ୍ଗପିଲାଙ୍କ ମନ ଖୁସି କରିବାକୁ ସେମାନଙ୍କ ନାଁରେ ଯୋଡ଼ି ଗୀତ ରଚନା କରନ୍ତି ।

ବେଳେ ବେଳେ ଗାଁ ପିଲାଙ୍କ ମେଳରେ ଗୀତ ପ୍ରତିଯୋଗିତା ଚାଲେ । ସ୍ଥାନୀୟ ଲୋକଗୀତର ଲହରରେ ଚଉଦିଗଯାକ ଲହରିଯାଇ ଉଠେ । ଡାଲଖାଇ, ସଜନୀ, ବଉଳ ଗୀତଠୁ ଆରମ୍ଭ କରି ଦଣ୍ଡ, କର୍ମା ନଚନିଆ ପ୍ରଭୃତି ଗୀତ ବୋଲାହୁଏ । ଭୀମ ଭୋଇ ଗୀତ ଗାଇବାରେ ଯେପରି ପୋଖତ, ଗୀତ ଯୋଡ଼ିବାରେ ତାଠୁ ବଳି ପୋଖତ । ସାଙ୍ଗ ପିଲମାନେ ତାଙ୍କ ଗୀତ ଗାଇବାର ଭଙ୍ଗୀ ଦେଖି ଆଶ୍ଚର୍ଯ୍ୟ ହୁଅନ୍ତି । ସେମାନେ ଭାବନ୍ତି, ଭୀମ ଜାତିରେ କନ୍ଧ ହେଲେବି, ତାର ଅନେକ ବୁଦ୍ଧି । ସେ କୌଣସି ବ୍ରାହ୍ମଣ ପିଲାଙ୍କୁ ଠିପିଯିବା

## ଧନକର କଥା

ଭୀମ ଭୋଇ ସେଦିନ ଗାଈ ଚରାଉ ଚରାଉ ହାଲିଆ ହୋଇ ଗୋଟିଏ ଗଛମୂଳେ ଶୋଇ ପଡ଼ିଲେ । ଲେଉଟାଣି ବେଳ ଗଡ଼ିଗଲା ପଛକେ, ତାଙ୍କର ଗଭୀର ନିଦଟା ଭାଙ୍ଗିଲା ନାହିଁ । ସାଙ୍ଗ ପିଲମାନେ ଭାବିଲେ, କୌଣସି କାମରେ ଭୀମ ଗାଁକୁ ଚାଲି ଯାଇଛି । ତେଣୁ ସେମାନେ ଭୀମ ଭୋଇ ଚରାଇ ଆଣିଥିବା ଗାଈ ବଳଦଙ୍କୁ ସାଙ୍ଗରେ

ନେଇ ଗାଁକୁ ଫେରି ଆସିଲେ । ତାପରେ ସିଏ ଯାହାଘରେ ଯାଇ ଶୋଇ ପଡ଼ିଲେ । ଗାଁରେ ଚୈତନ୍ୟ ପଧାନ ନଥିଲେ । ସେ ଥିଲେ ଖ୍ୟାମ ଭୋଇଙ୍କର ଖବର ବୁଝିଥାନ୍ତେ । ଆଉ କେହି ତାଙ୍କ କଥା ବୁଝିଲେ ନାହିଁ ।

ତେଣେ ରାତି ପହରକୁ ଖ୍ୟାମଭୋଇଙ୍କ ନିଦ ଭାଙ୍ଗିଲା । ସେ ଦେଖିଲେ, କୃଷ୍ଣପକ୍ଷର କଳା ମିଶମିଶ ଅନ୍ଧାର ଘୋଟି ଯାଇଛି । ଗାଈ ବଳଦଙ୍କର ଦେଖା ନାହିଁ । ଗଉଡ଼ ପିଲାମାନେ ଫେରି-ଗଲେଣି । ସେ ଚଞ୍ଚଳ ଉଠି ଠିଆ ହେଲେ ଓ ଗାଁ ଆଡ଼କୁ ଧାଇଁବାକୁ ଲାଗିଲେ ।

ଚଲାବାଟ ପାଖରେ ମାଟି କୂଅଟିଏ ଥିଲା । ଖ୍ୟାମ ଭୋଇଙ୍କର ସେ କଥା ଆଉ ମନେ ନାହିଁ । ତରତର ହୋଇ ଧାଇଁ ଆସୁ ଆସୁ ସେ ସେହି ମାଟି କୂଅ ଭିତରେ ଗଳି ପଡ଼ିଲେ । ମାଟି କୂଅରୁ ଉଠିବାର ବାଟ ନାହିଁ । ସେ ବେକେ ପାଣିରେ ଠିଆ ହୋଇ ଶୀତରେ ଥରିବାକୁ ଲାଗିଲେ । ପାଟି କରି ନିଜର କୂଅରେ ପଡ଼ି ଯାଇଥିବା ଖବର ଶୁଣାଇଲେ । କିନ୍ତୁ କିଏ ପାଖରେ ଅଛି ଯେ ତାଙ୍କର ଡ଼ାକ ଶୁଣିବ ? ଏଣେ ପ୍ରଚୁର ଭୋକ ବି ହେଉଛି । ପେଟ ଆଉଟୁ ପାଉଟୁ ହେଲଣି । କଣ୍ଠ ଫଟାଇ ସେ ଖାଲି ଚିତ୍କାର କଲେ । ତାପରେ ହାଲିଆ ହୋଇ ଚୁପ୍ ରହିଲେ । ଭାବିଲେ, ତାଙ୍କର କାଳ ଏଥର ପୂରିଲା ! ଯଦି ସମ୍ଭବ, ସ୍ୱୟଂ ଭଗବାନ ହିଁ ତାଙ୍କୁ ରକ୍ଷା କରିବେ ।

ସକାଳ ପାହି ସୂର୍ଯ୍ୟ ଉଦୟ ହେଲା । ମନର ସବୁ ଜୋର୍ ଖଟାଇ ସେ ଆଉଥରେ ଚିତ୍କାର କଲେ, 'ବଞ୍ଚାଅ, ବଞ୍ଚାଅ ।'

ଠିକ୍ ଏହିକାଳବେଳେ ମହିମା ଧର୍ମର ପ୍ରବର୍ତ୍ତକ 'ମହିମା ଗୋସାଇଁ' ସେହି ବାଟ ଦେଇ ତାଙ୍କର ଶିଷ୍ୟ ଜଗନ୍ନାଥ ଦାସଙ୍କ ନିକଟକୁ ବଉଦ ରାଜ୍ୟର 'ବଳଙ୍ଗିଧା' ଗ୍ରାମକୁ ଯାଉଥିଲେ । ଭୀମ ଭୋଇଙ୍କ ଭାଗ୍ୟ ବୋଲିବାକୁ ହେବ । ମହିମା ଗୋସାଇଁ କାନରେ ଭୀମ ଭୋଇଙ୍କ ଡାକ ଶୁଭିଲା । ସେ ଦେଖିଲେ, କୂଅ ଭିତରେ ଜଣେ କେହି ଲୋକ ପଡ଼ି ଯାଇଛି । ସେହି ଲୋକକୁ ଉଦ୍ଧାର କରିବା ପାଇଁ ସେ ଲାଗି ପଡ଼ିଲେ ।

କୂଅ ପାଖରେ ଗଛଟିଏ ପଡ଼ିଥିଲା । ମହିମା ଗୋସାଇଁ ସେହି କାଠ ଆଣି ମାଟି କୂଅ ମୁହଁରେ ସଜାଇ ରଖିଲେ । ପାଖରେ ଦଉଡ଼ି ବା ଅନ୍ୟ କିଛି ନ ପାଇ, ନିଜେ କାଠକୁ ଦୁଇ ହାତରେ ଜାବୁଡ଼ି ଧରି କୂଅ ଭିତରକୁ ଓହ୍ଲାଇ ପଡ଼ିଲେ । ଭୀମ ଭୋଇଙ୍କୁ କହିଲେ 'ଭୟ ନାହିଁ' । ମୋ ପାଦକୁ ଧରି ଉଠି ଆସ ।'

ଭୀମ ଭୋଇଙ୍କର ମନେ ହେଲା, ସ୍ୱୟଂ ଭଗବାନ ଆସି ତାଙ୍କୁ ଏ ମରଣ ମୁହଁରୁ ଉଦ୍ଧାର କରୁଛନ୍ତି । ନ ହେଲେ କୂଅରୁ ରକ୍ଷା ପାଇବାର ବାଟ ନ ଥିଲା ।

ଭୀମ ଭୋଇ ଓ ମହିମା ଗୋସାଇଁ ଯେ କୌଣସି ମତେ କୂଅ ଭିତରୁ ଉଠି ଆସିଲେ ।

ସେତେବେଳେ ଭୀମ ଭୋଇଙ୍କ ଅବସ୍ଥା କହିଲେ ନ ସରେ । ତାଙ୍କ ପାଖରେ ବସି ସେବା ଶୁଶ୍ରୂଷା କରି ଓ ଖାଇବାକୁ ଦେଇ, ମହିମା ଗୋସାଇଁ ତାଙ୍କୁ ସୁସ୍ଥ କଲେ ।

ଚେତା ଫେରିବା ପରେ, ଭୀମ ଭୋଇ ମହିମା ଗୋସାଇଁଙ୍କର ମୁଖମଣ୍ଡଳ ଦେଖି ମୋହିତ ହେଲେ । ଅନେକ ଦିନ ତଳର ଘଟଣା

ତାଙ୍କର ମନେ ପଡ଼ିଲା । ତାଙ୍କୁ ଯେତେବେଳେ ମାତ୍ର ଗୃରିବର୍ଷ ବୟସ, କନ୍ଦର୍ପ ଗାଁରେ ଏହି ଯୋଗୀଙ୍କ ସଙ୍ଗରେ ତାଙ୍କର ଦେଖା ହୋଇଥିଲା । ଏବେ ବିପତ୍ତି ବେଳେ ସେହି ଯୋଗୀ ଆସି ତାଙ୍କୁ ମରଣ ମୁହଁରୁ ଉଦ୍ଧାର କଲେ । ଭୀମ ଆତ୍ମସ୍ଥ ହେବା ପରେ ମହିମା ଗୋସାଇଁଙ୍କ ପାଦ ତଳେ ପଡ଼ି ତାଙ୍କୁ ସ୍ତୁତି କଲେ ।

ଭୀମ ଭୋଇଙ୍କ କଣ୍ଠ ସ୍ୱରରେ କି ପ୍ରକାର କମିଆଁ ଥିଲା କେଜାଣି, ମହିମା ଗୋସାଇଁ ତାହା ଶୁଣି ପ୍ରସନ୍ନ ହେଲେ । ପୁଣି ଭୀମ ଭୋଇଙ୍କ ଆଶୁ କବିତ୍ୱ ଓ ଗୀତ ଗାଇବା ଭଙ୍ଗୀ ମହିମା ଗୋସାଇଁଙ୍କୁ ବିମୁଗ୍ଧ କଲା । ତାଙ୍କର ମନେ ହେଲା ଯେ ତାଙ୍କର ନୂତନ ଧର୍ମ ପ୍ରଚାର ପାଇଁ ଏଭଳି ଜଣେ ଲୋକର ଆବଶ୍ୟକତା ଥିଲା । ଏତେ ଦିନକେ ତାଙ୍କ ଇଚ୍ଛା ପୂରଣ ହେଲା । ସ୍ଥିର କଲେ, ତାଙ୍କୁ ତାଙ୍କର ମହିମା ଧର୍ମରେ ଦୀକ୍ଷିତ କରାଇ ଗ୍ରନ୍ଥ ରଚନା ଓ ଧର୍ମ ପ୍ରଚାରର ଦାୟିତ୍ୱ ଦେବେ ।

ଭୀମ ଭୋଇ ମହିମା ଗୋସାଇଁଙ୍କୁ ବିନୀତ ଅନୁରୋଧ କଲେ, ମୋର କେହି ନାହାଁନ୍ତି । ମୋର ପ୍ରାଣ ରକ୍ଷା କରିଛନ୍ତି । ଆପଣ ମୋର ବାପ ମା, ଆପଣ ମୋର ଭଗବାନ । ମୋତେ ସାଙ୍ଗରେ ନିଅନ୍ତୁ !

ମହିମା ଗୋସାଇଁ ଭୀମ ଭୋଇଙ୍କ ଉପରେ ସନ୍ତୁଷ୍ଟ ହୋଇ ଆଶୀର୍ବାଦ କଲେ ଏବଂ କହିଲେ, ଭୀମ ! ବ୍ୟସ୍ତ ହୁଅ ନାହିଁ । କଙ୍କଣ ପଡ଼ାରେ ଯାଇ ଅପେକ୍ଷା କର, ଅଳ୍ପଦିନ ପରେ ଫେରି ଆସି ତୁମକୁ ଦେଖା ଦେବି । ଏବେ ଗାଁକୁ ଫେରିଯାଅ ।

ଭୀମ ଭୋଇ ମହିମା ଗୋସାଇଁଙ୍କ ପାଦ ଧୂଳି ନେଇ କଙ୍କଣ ପଡ଼ାକୁ ଫେରି ଆସିଲେ ଓ ଗାଁ ମୁଣ୍ଡରେ ବସା କରି ରହି ମହିମା ଗୋସାଇଁଙ୍କୁ ଅପେକ୍ଷା କଲେ ।

# ମହିମା ଗୋସାଇଁଙ୍କ ଠାରୁ ଦୀକ୍ଷା ଗ୍ରହଣ ଓ ମହିମା ଧର୍ମ ପ୍ରଚାର

ଦିନେ ଭୀମ 'ମହିମା ଗୋସାଇଁ'ଙ୍କ କଥା ସ୍ମରଣ କରି ତାଙ୍କର କଙ୍କଣପଡ଼ା ଗ୍ରାମର ବସାଘରେ ଶୋଇଥିଲେ, ରାତିରେ 'ମହିମା ଗୋସାଇଁ' ତାଙ୍କ ଶିଷ୍ୟଙ୍କୁ ସାଙ୍ଗରେ ନେଇ କଙ୍କଣ ପଡ଼ାରେ ପହଞ୍ଚିଲେ । ସେ ଭୀମ ଭୋଇଙ୍କ ବସାଘର ମୁହଁରେ ଛିଡ଼ା ହୋଇ ତାଙ୍କର ନାଁ ଧରି ଡାକିଲେ ।

ଭୀମ ଭୋଇ ବିଛଣା ଛାଡ଼ି ଛିଡ଼ା ହେଲେ ଓ ଦୁଆର ଫିଟାଇ ଦେଖିଲେ, ମହିମା ଗୋସାଇଁ ତାଙ୍କର ଶିଷ୍ୟଙ୍କ ସାଙ୍ଗରେ ଅପେକ୍ଷା କରିଛନ୍ତି । ସେ ଭକ୍ତି ଗଦ୍‌ଗଦ ଚିତ୍ତରେ ଉଭୟଙ୍କୁ ସାଷ୍ଟାଙ୍ଗ ହେଲେ ।

ମହିମା ଗୋସାଇଁ ତାଙ୍କର ଶିଷ୍ୟଙ୍କୁ ଭୀମ ଭୋଇଙ୍କ ସଙ୍ଗରେ ପରିଚୟ କରାଇ ଦେଇ କହିଲେ ଇଏ ହେଉଛନ୍ତି ବଉଦ ରାଜ୍ୟର 'ବଲସିଙ୍ଘା' ଗ୍ରାମର ଜଗନ୍ନାଥ ଦାସ । ବୈଷ୍ଣବ ଧର୍ମର ସାଧୁ ଥାଇ ପ୍ରତିମା ପୂଜା କରୁଥିଲେ । ମୁଁ ତାଙ୍କୁ ଦୀକ୍ଷା ଦେଇଛି । ସେ ଏଥର ମୋର ନୂତନ ଧର୍ମ ପ୍ରଚାର କରିବେ । ତାଙ୍କର ନୂଆ ନାଁ ହେଉଛି 'ଗୋବିନ୍ଦ ଦାସ' । ସେ ସଗୁଣ ଧର୍ମ ଛାଡ଼ି ନିର୍ଗୁଣ ଧର୍ମ ଗ୍ରହଣ କରିଛନ୍ତି । ତୁମେ ବି ମୋ ପାଖରୁ ଦୀକ୍ଷା ଗ୍ରହଣ କର ଓ ମହିମା ଧର୍ମ ପ୍ରଚାର ପାଇଁ ଗ୍ରନ୍ଥ ରଚନା କର ।

ଏହାପରେ ମହିମା ଗୋସାଇଁ ଭକ୍ତ ଭୀମ ଭୋଇଙ୍କୁ ମହିମା ଧର୍ମ ଦୀକ୍ଷା ଦେଲେ ।

ଭୀମ ଭୋଇ ବିନୀତ କଣ୍ଠରେ କହିଲେ, ମହିମା ଧର୍ମ କଣ ମୋତେ ବୁଝାଇ କହନ୍ତୁ । ଆପଣଙ୍କ ଆଜ୍ଞାରେ ମୁଁ ମୋର କର୍ତ୍ତବ୍ୟ ସାଧନ କରିବି ।

ମହିମା ଗୋସାଇଁ ଓ ଗୋବିନ୍ଦ ଦାସ ବାବା ଭୀମ ଭୋଇଙ୍କୁ ମହିମା ଧର୍ମ ବିଷୟରେ ସବୁକଥା ବୁଝାଇ କହିଲେ । ତାପରେ ସେମାନେ ଭୀମ ଭୋଇଙ୍କ ପାଖରୁ ବିଦାୟ ନେଇ ଚାଲିଗଲେ ।

ସେହିଦିନଠାରୁ ଭକ୍ତ ଭୀମ ଭୋଇ ହେଲେ ମହିମା ଧର୍ମୀ । ଗୁରୁ ମହିମା ଗୋସାଇଁଙ୍କ ଆଜ୍ଞାରେ ସେ ମହିମା ଧର୍ମର ନୀତି ନିୟମ ମାନି ଚଳିଲେ ଓ ମହିମା ଧର୍ମ ଗ୍ରନ୍ଥମାନ ଲେଖି ଚାଲିଲେ । ତାଙ୍କ ଦ୍ୱାରା ରଚିତ ଭଜନ, ଜଣାଣ ଓ ଗ୍ରନ୍ଥମାନ ମହିମା ଗୋସାଇଁଙ୍କ ଆଗରେ ପାଠ କରି ଯାଉଥିଲା ଓ ତାଙ୍କର ଅନୁମୋଦନ ଲାଭ କରିବା ପରେ ଶିଷ୍ୟମାନଙ୍କ ଆଗରେ ପ୍ରଚାର କରି ଯାଉଥିଲା ।

ଭୀମ ଭୋଇ ଏହି ପୂର୍ବରୁ ଡାଲଖାଇ, ରସରକେଲି, ବଉଲି, କର୍ମା ପ୍ରଭୃତି ଲୋକଗୀତମାନ ରଚନା କରୁଥିଲେ । ଏହା ବ୍ୟତୀତ ବିଭିନ୍ନ ଦେବଦେବୀଙ୍କ ଉଦ୍ଦେଶ୍ୟରେ ଭଜନ, ଜଣାଣ, ଚଉତିଶା ଇତ୍ୟାଦି ଲେଖି ସାଙ୍ଗ ମେଳରେ ପ୍ରଶଂସା ଭାଜନ ହୋଇଥିଲେ । ତାଙ୍କ ଦ୍ୱାରା ରଚିତ 'ଡାଲଖାଇ' 'ଦଣ୍ଡ' ଗୀତମାନ ସ୍ଥାନୀୟ କଳାକାର ମାନଙ୍କ ଦ୍ୱାରା ଗାନ କରା ଯାଉଥିଲା । ସେ ନିଜେ ମଧ୍ୟ ଲୋକନାଚ ଓ ଲୋକନାଟମାନଙ୍କରେ ଉପସ୍ଥିତ ରହି କଳାକାରମାନଙ୍କୁ ଉତ୍ସାହିତ କରୁଥିଲେ । ଏହା ଶୁଣି ମହିମା ଗୋସାଇଁ କହିଲେ, ସେହିପରି ଗୀତ ଆଉ ଲେଖ ନାହିଁ । ତାହା କଲେ କବି ପ୍ରସିଦ୍ଧି ଲାଭକରି ପାରିବ ନାହିଁ । ମହିମାଧର୍ମ ସମ୍ପର୍କରେ ଗ୍ରନ୍ଥ ରଚନା କର । ତୁମେ କବି ପ୍ରସିଦ୍ଧି ଲାଭ କରିବ । ତୁମର ଭାଷା ଓ ଛନ୍ଦ ଜ୍ଞାନ ଅତି ଉତ୍ତମ ।

କଣ୍ଠ ସ୍ୱର ଅତି ମଧୁର । ଏହାଛଡ଼ା ବିଭିନ୍ନ ବାଦ୍ୟରେ ତୁମେ ନିପୁଣ । ଭବିଷ୍ୟତରେ ମହାନ କବି ଓ କଳାକାର ଭାବରେ ଲୋକ-ପ୍ରସିଦ୍ଧି ଲାଭ କରିବ । ତୁମକୁ ସେଥିପାଇଁ ଆଶୀର୍ବାଦ କରୁଛି । ଏଣୁ ଏଣିକି ଅନ୍ୟ କିଛି ବିଷୟ ନଲେଖି, କେବଳ ମହିମା ଧର୍ମ ସମ୍ପର୍କରେ ରଚନା କରିବ ।

କନ୍ଧ କବି ଭୀମ ଭୋଇ ମହିମା ଗୋସାଇଁଙ୍କ ଆଶୀର୍ବାଦ ଓ ପ୍ରଶଂସା ଲାଭ କରି ନିଜକୁ କୃତାର୍ଥ ମନେ କଲେ । ତାଙ୍କର କବି ପ୍ରତିଭା ମହିମା ଗୋସାଇଁଠାରୁ ସ୍ୱୀକୃତି ଲାଭ କରି ବିକଶିତ ହେଲା । ଏତେଦିନ ପର୍ଯ୍ୟନ୍ତ ସେ ଅବହେଳା ଓ ଅଣଦେଖାରେ ପଡ଼ି ରହିଥିଲେ । ମହିମା ଗୋସାଇଁ ସର୍ବ ପ୍ରଥମେ ତାଙ୍କୁ ତାଙ୍କର ଆତ୍ମ-ଶକ୍ତି ସଙ୍ଗେ ପରିଚୟ କରାଇ ଦେଲେ । କହିଲେ, ଭୀମ ! ତୁମଦ୍ୱାରା ସବୁକିଛି ସମ୍ଭବ ହେବ । ତୁମର ରଚନା ବଳରେ ମୋର ନବ ପ୍ରତିଷ୍ଠିତ 'ମହିମାଧର୍ମ' ଜନସମାଜରେ ପ୍ରତିଷ୍ଠା ଲାଭ କରିବ । ତୁମର ଦ୍ୱାରା ରଚିତ ଗ୍ରନ୍ଥମାନ ମହିମା ଧର୍ମର ମେରୁସ୍ତମ୍ଭ ହେବ । ଲାଗିପଡ଼ । ସମୟ ନଷ୍ଟ କରନାହିଁ ।

ଭୀମ ଭୋଇଙ୍କ ହୃଦୟ ମହିମା ଗୋସାଇଁଙ୍କ କଥା ଶୁଣି ପୁଲକିତ ହେଲା । ଜନସମାଜ ମଧ୍ୟରେ ସେ ନିଜର ସ୍ଥାନ ବାଛି ଠିକ କରିନେଲେ । ସେ ଏଥର ବୁଝିଲେ, ତାଙ୍କର ଜୀବନ ବୃଥା ନୁହେଁ । ତାଙ୍କ ଦ୍ୱାରା ସମାଜର ମଙ୍ଗଳ ସାଧନ ଘଟିବ । ମହିମା ଧର୍ମର ପ୍ରଚାର ଓ ପ୍ରସାର ପାଇଁ ସେ ଆଜୀବନ ଉଦ୍ୟମ କରିବେ । ମହିମା ଧର୍ମର ବାଣୀକୁ ଜନ ସାଧାରଣଙ୍କ କଲ୍ୟାଣ ପାଇଁ ଲିପି ରଖିବେ ।

ଭୀମ ସଂସାରର ଗତିମତି ଦେଖି ଅତିଷ୍ଠ ହୋଇ ଉଠିଥିଲେ । ସାମାଜିକ କୁସଂସ୍କାର ସଙ୍ଗରେ ଲଢ଼େଇ କରିବା ପାଇଁ ନିଜକୁ

ପ୍ରସ୍ତୁତ କରୁଥିଲେ । ଜାତି-ଅଜାତି କୁଆଁ ଅକୁଆଁ, ବଡ଼ ସାନ, ଧନୀ ଗରିବ ଇତ୍ୟାଦି ଭେଦ ଭାବ ତାଙ୍କୁ ଖୁବ୍ ବାଧୁଥିଲା । ବ୍ରାହ୍ମଣମାନଙ୍କ ଶୋଷଣମାନ ଦେଖି ସେ ବ୍ୟଥିତ ହେଉଥିଲେ । ଲୋକେ ଧର୍ମମାର୍ଗ ଛାଡ଼ି ମିଥ୍ୟା, ବ୍ୟଭିଚାର ଓ ଛଳନାରେ ବୁଡ଼ି ରହିଥିଲେ । ତା' ବିରୋଧରେ ଲଢ଼େଇ କରିବା ପାଇଁ ଭୀମ ଇଚ୍ଛା କରୁଥିଲେ । କିନ୍ତୁ ଏ କ୍ଷେତ୍ରରେ ଏକୁଟିଆ କିପରି ଲଢ଼ିବେ ବୋଲି ମନ ଉଣା ହେଉଥିଲା । ବର୍ତ୍ତମାନ ମହିମା-ଗୋସାଇଁ ଓ ମହିମା ଧର୍ମର ଆବିର୍ଭାବ ତାଙ୍କ ସପକ୍ଷରେ ଗଲା । ସତେ ଅବା ଧର୍ମ ଓ ସମାଜକୁ ସୁଧାରିବା ପାଇଁ, ତାଙ୍କର ସଙ୍କଳ୍ପକୁ କାର୍ଯ୍ୟକାରୀ କରିବା ପାଇଁ ମହିମା ଗୋସାଇଁଙ୍କ ଦ୍ୱାରା ମହିମା ଧର୍ମ ନୂତନ ଭାବରେ ପ୍ରତିଷ୍ଠିତ ହେଲା । ଭକ୍ତ ଭୀମ ପରମ ସନ୍ତୋଷ ଲାଭ କଲେ । ତାଙ୍କର ଜୀବନ ଯୌବନ ନୂତନ ବାର୍ତ୍ତା ଲାଭ କରି ଚହଲି ଉଠିଲା । ସେ ନିଜକୁ ଧନ୍ୟ ମନେ କଲେ ।

ମହିମା ଗୋସାଇଁ ସେଦିନ ତାଙ୍କୁ କୂଅ ଭିତରୁ ଉଦ୍ଧାର କରି ନୂତନ ଜନ୍ମ ଦେଇଥିଲେ । ଏବେ ତାଙ୍କୁ ମହିମା ଧର୍ମରେ ଦୀକ୍ଷିତ କରି ଓ ଉକ୍ତ ମହିମା ଧର୍ମ ପ୍ରଚାର ଓ ପ୍ରସାର ପାଇଁ ଆଦେଶ ଦେଇ, ସେହି ନୂତନ ଜନ୍ମର ସଂସ୍କାର କଲେ । ସେ ଅନୁଭବ କଲେ, ମହିମା ଗୋସାଇଁ ସାମାନ୍ୟ ମଣିଷ ନୁହନ୍ତି । ସେ ଭଗବାନ ପରମ-ବ୍ରହ୍ମଙ୍କ ସ୍ୱୟଂ ଅବତାର । ସଂସାରର ଦୁଃଖ ନିବାରଣ ନିମନ୍ତେ ନିଜେ ଅବତାର ଗ୍ରହଣ କରି ନୂତନ ଧର୍ମ ପ୍ରତିଷ୍ଠା କରିଛନ୍ତି ।

ଏହାପରେ ଭୀମ ଭୋଇ ମହିମା ଗୋସାଇଁଙ୍କୁ ମହିମା ଧର୍ମର ପରମ ଉପାସ୍ୟ ଅଲେଖ ପରମ ବ୍ରହ୍ମଙ୍କ ଅବତାର ରୂପେ ଗ୍ରହଣ କରି ତାଙ୍କର ସେବା ପୂଜା କଲେ ଓ ତାଙ୍କର ଆଜ୍ଞାକୁ ପରମବ୍ରହ୍ମଙ୍କ ଆଜ୍ଞା ବୋଲି ଧରିନେଲେ ।

ଖ୍ରୀଷ୍ଟ ଶ୍ରେଇ ମହିମା ଧର୍ମର ଏକନିଷ୍ଠ ସାଧକ ଭାବରେ କାର୍ଯ୍ୟ କଲେ । ସେ ନିଜ ଜୀବନରେ ମହିମା ଧର୍ମ ଆଚରଣ କଲେ । ଅନ୍ୟ-ମାନଙ୍କ ପରି ମୁହଁରେ କଥାଏ କହି କାର୍ଯ୍ୟରେ ଆଉ କଥାଏ କରୁ ନଥିଲେ । ସେ ସର୍ବଦା ସତ୍ୟକଥା କହିଲେ ଓ ପ୍ରତିମା ପୂଜା କଲେ ନାହିଁ । ମନ୍ଦିରକୁ ଯିବା ତ ଦୂରର କଥା, ଦେବଦେବୀଙ୍କ ପ୍ରସାଦ ସୁଦ୍ଧା ଗ୍ରହଣ କଲେ ନାହିଁ । ଆବାଳବୃଦ୍ଧ ବନିତାଙ୍କୁ ମହିମା ଧର୍ମର ବାର୍ତ୍ତା ଶୁଣାଇ, ଏହି ନୂତନ ଧର୍ମରେ ଦୀକ୍ଷିତ ହେବାକୁ କହିଲେ ।

ଲୋକମାନେ ଖ୍ରୀଷ୍ଟ ଶ୍ରେଇଙ୍କ କାର୍ଯ୍ୟକଳାପ ଦେଖି ଆଶ୍ଚର୍ଯ୍ୟ ହେଲେ । ଭାବିଲେ, ସେ ପାଗଳ ହୋଇ ଯାଇଛନ୍ତି । ନହେଲେ ଏତେ ଶାନ୍ତ, ସରଳ ଓ ସୁଧୀର ଯୁବକ ଏଭଳି ଧର୍ମଛଡ଼ା କଥା କହନ୍ତା ନାହିଁ । ସେ ଯାହା କହୁଛି, ସେକଥା ତିନି ଭୁବନରେ ଦେଖା ନଥିଲ କି ଶୁଣା ନଥିଲା । ପାଗଳ ନହେଲେ କଣ ଲୋକ ଦିଅଁ ଦେବତା ବିରୁଦ୍ଧରେ କଥା କହେ ?

କେତେ ଲୋକ ଖ୍ରୀଷ୍ଟ ଶ୍ରେଇଙ୍କ କଥା ସହି ନପାରି ଗାଁରୁ ଦିର ଘଉଡ଼ା କଲେ । କାରଣ ଖ୍ରୀଷ୍ଟ ସେମାନଙ୍କ ସବୁ ଗୁମର ପଦାରେ ପକାଇ ଦେଲେ । ଭୁଲ କଣ ଠିକ କଣ ଲୋକଙ୍କୁ ସେ କଥା ବୁଝାଇ ଦେଲେ ।

ଏ ଦୁନିଆ ବଡ଼ ବିଚିତ୍ର । ଯିଏ ସତ କହେ, ଆଗେ ସେ ଦଣ୍ଡପାଏ । ସତ୍ୟବାଦୀମାନେ ନିନ୍ଦା ପାଆନ୍ତି । ଧାର୍ମିକମାନେ ଶୋକ ଉପାସରେ ମରନ୍ତି । ଭଲ ଲୋକମାନେ ଉପହାସିତ ହୁଅନ୍ତି ।

କ୍ରମେ ଖ୍ରୀଷ୍ଟଙ୍କର ଦୁର୍ନାମ ରଟନା ହେଲା ।

ଭୀମ ଭୋଇ ସହିତେ କରି ଥିଲେ । ମହିମା ଧର୍ମର କଥା କହି ବ୍ରାହ୍ମଣ, ଅବ୍ରାହ୍ମଣ ସମସ୍ତଙ୍କର ଶତ୍ରୁ ହୋଇଲେ । ତାଙ୍କୁ ନିଆଁ ପାଣି ବାସନ୍ଦ କରାଗଲା । ମାଗିଲେ କେହି ଅନ୍ନ ଭିକ୍ଷା ଦେଲେ ନାହିଁ । ମୂଲ ଲାଗିବାକୁ କେହି ବରଗିଲେ ନାହିଁ । କହିଲେ ଭୀମ ଭୋଇ ଜାତି ଅଜାତି ନମାନି ବଖାଳ କରୁଛି । ଦେବତା ବ୍ରାହ୍ମଣ ନମାନି ପାପ କରୁଛି । ତାକୁ ଛୁଇଁଲେ ପାପ, ତାକୁ ଦେଖିଲେ ପାପ । ଆଖି ଥାଉଁ ଥାଉଁ ଅନ୍ଧ ଆଚରଣ କରୁଛି ।

ଗାଁ । ଗାଁରେ ଭୀମ ଭୋଇଙ୍କ ନାମରେ ପ୍ରଚାର ହେଲା––

'ଭୀମ ଭୋଇ କାନ୍ଧ
ଆଖି ଥାଉ ଥାଉ ଅନ୍ଧ ।'

ଭୀମ ଭୋଇ ବାର ବିଦସ୍ଥା ହୋଇ ଘରଦ୍ୱାର, ଗାଁଗଣ୍ଡା, ବନ୍ଧୁ ବାନ୍ଧବ ଛାଡ଼ି ଏଣେ ତେଣେ ଘୂରି ବୁଲିଲେ । ସେ ଗୋଟିଏ ଜାଗାରେ ରହି ପାରିଲେ ନାହିଁ କି ବସି ପାରିଲେ ନାହିଁ ।

ତାଙ୍କର ପରବର୍ତ୍ତୀ ଜୀବନରେ ସେ ପ୍ରତିଷ୍ଠା ପାଇଲେ ସତ, କିନ୍ତୁ ପୂର୍ବର ସେହି ଅପପ୍ରଚାରକୁ ମନେ ରଖି ଲୋକେ ତାଙ୍କୁ 'ଅନ୍ଧ କାନ୍ଧ ଭୀମ ଭୋଇ' ବୋଲି କହିଲେ ।

## ଭୀମ ଭୋଇଙ୍କ ନିର୍ଯ୍ୟାତନା

ଭୀମ ଭୋଇ 'ସ୍ତୁତି ଚିନ୍ତାମଣି' ନାମରେ ଏକ ଗ୍ରନ୍ଥ ରଚନା କରି ଅଛନ୍ତି । ତାହା ମହିମା ଧର୍ମର ଆଦ୍ୟ ପ୍ରାମାଣିକ ଗ୍ରନ୍ଥ ରୂପେ ସମ୍ମାନିତ ହୋଇଥାଏ । ଉକ୍ତ ଗ୍ରନ୍ଥରେ ସେ ମହିମା ଧର୍ମ ପ୍ରଚାର ବେଳେ ଯେଉଁ ଦୁଃଖ ନିର୍ଯ୍ୟାତନାର ସମ୍ମୁଖୀନ ହୋଇଥିଲେ ତାକୁ ଅତ୍ୟନ୍ତ ମର୍ମସ୍ପର୍ଶୀ ଭାବରେ ବର୍ଣ୍ଣନା କରି ଅଛନ୍ତି । ସେ ଲେଖିଛନ୍ତି—

'ଧର୍ମ ଉଦେ ଦିନୁ ଏ ମାନବ ତନୁ
ବହିଗଲା ଏତେ ଦିନ
ନିନ୍ଦାକୁ ବସ୍ତ୍ର ପ୍ରାୟେ କେତେ ପିନ୍ଧିବ
କଣ୍ଠିରେ କର ଭୂଷଣ । ୭୨ । ୪ ।
ହାସ୍ୟ ଭର୍ତ୍ସନା ଗାଳି ଗର୍ବ ଠେସାକୁ
ଗଳାରେ ପିନ୍ଧିଛୁ ମାଳ
ଠାକ ଠାକ ମୁହିଁ ଆଗତକୁ ଗୃହିଁ
ବହି ଯାଉଅଛୁ କାଳ । ୭୨ । ୫ ।
ଦଣ୍ଡି ଘାଗୁଡ଼ି ପଦ୍ମଏ ନିନ୍ଦାମାଳ
ଲମ୍ବି ଅଛୁ ଚଉକଡ
ଘନ ଘନ ନିରନ୍ତର ବାଜୁଅଛୁ
ଡଙ୍କା ଫେରୁଅଛୁ ପୃଥୀ ।' ୭୨ । ୭ ।

ସେ 'ରେଢାଖୋଲ' ରାଜ୍ୟରୁ ବିତାଡ଼ିତ ହୋଇ ସୋନପୁର ରାଜ୍ୟରେ ପ୍ରବେଶ କଲେ ।

ସୋନପୁର ରାଜ୍ୟରେ ବି ସେହି ଦଶା । ବହୁ ମହାପୁରୁଷଙ୍କ ପରି ସେ ସବୁଠାରେ ନିନ୍ଦା, ଅପମାନ ପାଇଲେ । କିନ୍ତୁ ସେ ମହିମା ଧର୍ମରୁ ଓହରି ଗଲେ ନାହିଁ । ବରଂ ଲୋକଙ୍କଠାରୁ ଆଘାତ ପାଇ ଶକ୍ତ ହେଲେ ।

କ୍ରମେ ତାଙ୍କ ତଥା ସମାଜର ନିମ୍ନ ସ୍ତରରେ ଥିବା ଲୋକଙ୍କ ମନକୁ ଛୋଇଲା । ସେମାନେ ଅନୁଭବ କଲେ, ଧର୍ମ ନାମରେ ଅନ୍ୟ-ମାନେ ସେମାନଙ୍କୁ ଠକୁଛନ୍ତି । ମିଛକଥା କହି ସେମାନଙ୍କୁ ସର୍ବସ୍ୱାନ୍ତ କରାଉ ଅଛନ୍ତି । ସେମାନେ ଖ୍ରିମ ଭୋଇଙ୍କୁ ସେମାନଂକର ତ୍ରାଣକର୍ତ୍ତା

ବୋଲି ଗ୍ରହଣ କଲେ । ଅଶିକ୍ଷିତ ଅର୍ଦ୍ଧଶିକ୍ଷିତ, ଦରିଦ୍ର ଓ ପତିତ ଶ୍ରେଣୀର ଲୋକେ ଭୀମ ଭୋଇଙ୍କ କଥାରେ ନୂତନ ଆଲୋକର ସନ୍ଧାନ ପାଇ ମହିମା ଧର୍ମକୁ ଗ୍ରହଣ କଲେ ।

ଭୀମ ଭୋଇ ପ୍ରଚାର କଲେ, ପାପୀମାନଙ୍କୁ ଉଦ୍ଧାର କରିବା ପାଇଁ ସ୍ୱୟଂ ପରମବ୍ରହ୍ମ 'ମହିମା ଗୋସାଇଁଙ୍କ' ଅବତାର ଗ୍ରହଣ କରିଛନ୍ତି । ତାଙ୍କୁ ଦର୍ଶନ କରି, ତାଂକ ଧର୍ମ ଗ୍ରହଣ କଲେ ଅବଶ୍ୟ ମୁକ୍ତି ମିଳିବ । ଯେଉଁପାପ କଲେ ଅନ୍ୟ କୌଣସି ଧର୍ମରେ ମୁକ୍ତି ମିଳେ ନାହିଁ, ସେହି ପାପ କରିଥିବା ଲୋକମାନେ ନିଜ ପାପ ପାଇଁ ଅନୁତାପ କରି ମହିମା ଧର୍ମ ଗ୍ରହଣ କଲେ ଅବଶ୍ୟ ମୁକ୍ତି ମିଳିବ ।

ପାପୀ ତାପୀ, ଦୀନ ଦରିଦ୍ରମାନେ ଭୀମ ଭୋଇଙ୍କ କଥାରେ ଆକୃଷ୍ଟ ହେଲେ । ସେମାନେ ମହିମା ଧର୍ମରେ ଦୀକ୍ଷିତ ହୋଇ ପ୍ରାତଃ ସ୍ନାନ କଲେ । ଉଷା ଓ ସାୟଂ କାଳରେ ପରଂବ୍ରହ୍ମଙ୍କ ଶରଣ ଦର୍ଶନ କଲେ । ମିଛ ଛାଡ଼ି ସତ କଥା କହିଲେ । ଦିନରେ ଭୋଜନ କରି ରାତି ଭୋଜନ ବନ୍ଦ କରିଦେଲେ । ଚୋରି କରିବା ଛାଡ଼ି ନିଜ ପରିଶ୍ରମ ଉପରେ ନିର୍ଭର କଲେ । ସଞ୍ଜବେଳେ ଖଞ୍ଜଣି ବାଦ୍ୟ ବଜାଇ ପରମେଶ୍ୱରଙ୍କ ଜଣାଣ, ଭଜନ ଇତ୍ୟାଦି ଗାନ କଲେ । ମନରୁ ହିଂସା, ବାଦ ଛାଡ଼ି ଦେଇ ଧର୍ମ ଆଚରଣ କଲେ ।

ଗୋଟିଏ ନୂଆ ଜୀବନ, ନୂଆ ସଂସାର ଜନ୍ମ ନେବାକୁ ଆରମ୍ଭ କଲା । ପତିତ, ଦଳିତ, ଅଜାତିଆମାନଙ୍କ ମୁହଁରେ ହସ ଫୁଟିଲା । ସେମାନେ ନୂତନ ଆଶା ନେଇ ଆଗକୁ ଚାଲିଲେ ।

ଗୋଟିଏ ନୂଆ ସମାଜ ବିକାଶ ଲାଭ କରୁଥିଲା । ସେ ସମାଜରେ ଜାତି ଅଜାତି, ସାନବଡ଼ର ଭେଦ ନ ଥିଲା । ସମସ୍ତେ

ଘାଇ ଘାଇ ପରି ଚଳିବାକୁ ଶିକ୍ଷା କରୁଥିଲେ । ବିପଦ ଆପଦରେ ପରସ୍ପରକୁ ସାହାଯ୍ୟ କରିବା ଧର୍ମ ବୋଲି ବୁଝୁଥିଲେ । ଭୀମ ଭୋଇଙ୍କ ପଛରେ ଧାଡ଼ି ବାନ୍ଧି ଚାଲିବାକୁ ସେମାନେ ଗର୍ବ ମନେ କରୁଥିଲେ ।

ଠିକ୍ ଏତିକିବେଳେ ଢେଙ୍କାନାଳର ଯୋରନ୍ଦାଠାରେ ଏକ ଅଘଟଣ ଘଟିଗଲା । ମହିମା ଧର୍ମର ପ୍ରତିଷ୍ଠାତା ମହିମା ଗୋସାଇଁ ୧୮୭୬ ଖ୍ରୀଷ୍ଟାବ୍ଦରେ ମାନବ ଲୀଳା ସମ୍ବରଣ କଲେ । ଏ ଦୁଃସମ୍ବାଦ ପାଇ ମହିମା ଧର୍ମର ସାଧୁ ସନ୍ନ୍ୟାସୀ ଓ ଭକ୍ତ ମଣ୍ଡଳୀ ଯୋରନ୍ଦା ଠାରେ ଏକାଠି ହେଲେ । ମହିମା ଗୋସାଇଁଙ୍କ ଜୀବିତାବସ୍ଥାରେ ସେହି ଧର୍ମରେ ଗୋଷ୍ଠୀ-କନ୍ଦଳ ଦେଖା ଦେଇଥିଲା, କିନ୍ତୁ ମହିମା ଗୋସାଇଁଙ୍କ ଯୋଗୁ ସମସ୍ତ ପ୍ରକାରର ସମାଧାନ ହୋଇ ଯାଉଥିଲା । ଏବେ ତାଙ୍କର ଅନୁପସ୍ଥିତିରେ ସ୍ୱାର୍ଥପର ସାଧୁ ସନ୍ନ୍ୟାସୀମାନେ ସେମାନଙ୍କ ମଧ୍ୟରେ ଥିବା ବହୁ ଦିନର ବିବାଦକୁ ବହୁଗୁଣିତ କଲେ ।

ଭୀମ ଭୋଇଙ୍କ ଧର୍ମପରାୟଣ ଆତ୍ମା ଏହା ଦେଖି କ୍ଷୋଭ ପ୍ରକାଶ କଲା । ଉପସ୍ଥିତ ସାଧୁ ସନ୍ନ୍ୟାସୀମାନଙ୍କୁ ସେ ଯେତେ କରି ବୁଝାଇ କହିଲେ ମଧ୍ୟ, ସେମାନେ ତାଙ୍କ କଥା ମାନିଲେ ନାହିଁ କି ଶୁଣିଲେ ନାହିଁ । ସେ ବାରମ୍ବାର ଅନୁରୋଧ କଲେ, ମହିମା ଧର୍ମରେ ସମସ୍ତେ ସମାନ । ସାନ ବଡ଼ କେହି ନାହିଁ । ସମସ୍ତେ ମିଳିମିଶି ଚଳ । ମହିମା ଧର୍ମର ପ୍ରତିଷ୍ଠା ପାଇଁ ଉଦ୍ୟମ କର । ମହିମା ଗୋସାଇଁଙ୍କ ଇଚ୍ଛା ପୂରଣ କର । କିନ୍ତୁ ତାଙ୍କ ଅନୁରୋଧ ବ୍ୟର୍ଥ ହେଲା । ଓଲଟା ସେମାନେ ଭୀମ ଭୋଇଙ୍କୁ ମହିମା ଧର୍ମରୁ ବାସନ୍ଦ କଲେ ।

ଭୀମ ଭୋଇ ଦାରୁଣ ଧକ୍କା ପାଇ ଯୋରନ୍ଦାରୁ ସୋନପୁର ରାଜ୍ୟକୁ ଫେରି ଆସିଲେ ଓ ସୋନପୁର ରାଜ୍ୟର ତତ୍କାଳୀନ ସମୃଦ୍ଧ ଗ୍ରାମ ଲକ୍ଷ୍ମୀପୁର ନିକଟସ୍ଥ 'ଖଲିଆ ପାଲି' ଠାରେ ମହିମା ଧର୍ମ ଆଶ୍ରମ ପ୍ରତିଷ୍ଠା କଲେ । ମହିମା ଗୋସାଇଁଙ୍କ ତିରୋଧାନ ପରେ, ମହିମା ଧର୍ମର ସାଧୁମାନଙ୍କ ଠାରୁ କୌଣସି ସାହାଯ୍ୟ ସହଯୋଗ ନ ପାଇ ସେ ନିଜେ ଭକ୍ତମାନଙ୍କୁ ମହିମା ଧର୍ମର ଦୀକ୍ଷା ଦେବାକୁ ଲାଗିଲେ ।

ଏହି ସମୟରେ ଢେଙ୍କାନାଳ ରାଜ୍ୟର ମଢ଼ି ଗ୍ରାମର(ଆଧୁନିକ ନାମ କାମାକ୍ଷ୍ୟାନଗର) ଅନ୍ନପୂର୍ଣ୍ଣା ଆସି ଭୀମ ଭୋଇଙ୍କ ପାଖରେ ରହିଲେ ଓ ଧର୍ମ ପ୍ରଚାର କାର୍ଯ୍ୟରେ ତାଙ୍କୁ ସାହାଯ୍ୟ କଲେ । ସମ୍ବଲପୁର ଅତାବିରା ନିକଟସ୍ଥ 'ତୋପ୍‌ବନହର୍' ଗ୍ରାମରୁ ବ୍ରାହ୍ମଣ ହରି ପଣ୍ଡା ଓ ବସୁଦେବ ପଣ୍ଡା, ଭୀମ ଭୋଇଙ୍କ ଧର୍ମ ପ୍ରଚାରରେ ଆକୃଷ୍ଟ ହୋଇ, ପଇତା ଛିଣ୍ଡାଇ ଆସି ମହିମା ଧର୍ମ ଗ୍ରହଣ କଲେ ଓ ଆଜୀବନ ତାଙ୍କ ପାଖରେ ରହି ମହିମା ଧର୍ମର ଗ୍ରନ୍ଥ ରଚନାରେ ସାହାଯ୍ୟ କରିବାକୁ ଲାଗିଲେ । ହରିପଣ୍ଡା ଓ ବସୁଦେବ ପଣ୍ଡାଙ୍କ ସଙ୍ଗରେ ଧର୍ମାନନ୍ଦ ଓ ମାର୍କଣ୍ଡ ନାମରେ ଦୁଇଜଣ ଶିକ୍ଷିତ ଲୋକ ମହିମା ଧର୍ମ ଗ୍ରହଣପୂର୍ବକ ଗ୍ରନ୍ଥ ରଚନାରେ ଭୀମଭୋଇଙ୍କୁ ପ୍ରଭୂତ ସାହାଯ୍ୟ କଲେ ।

ଭୀମ ଭୋଇଙ୍କ ଉଦ୍ୟମରେ ମହିମା ଧର୍ମ କ୍ରମେ ପ୍ରସାର ଲାଭ କରିବାକୁ ଲାଗିଲା । ହଜାର ହଜାର ନରନାରୀ ଭୀମ ଭୋଇ ଓ ଅନ୍ନପୂର୍ଣ୍ଣାଙ୍କ ନିକଟରୁ ମହିମା ଧର୍ମର ଦୀକ୍ଷା ନେଇ ଶୁଦ୍ଧପୂତ ଜୀବନ ଯାପନ କଲେ । ଓଡ଼ିଶାର ପଶ୍ଚିମାଞ୍ଚଳ ତଥା ମଧ୍ୟପ୍ରଦେଶର ବସ୍ତର, ବସନା, ରାଯ଼ପୁର ପ୍ରଭୃତି ଅଞ୍ଚଳରେ ଭୀମଭୋଇଙ୍କ ମହିମା ଧର୍ମ ପ୍ରାଧାନ୍ୟ ଲାଭ କଲା । ଭୀମ ଭୋଇଙ୍କୁ ଜୀବନର ତ୍ରାଣକର୍ତ୍ତା ମନେ କରି ଭକ୍ତମଣ୍ଡଳ ତାଙ୍କୁ ମଧ୍ୟ ପୂଜା କରିବାକୁ ଲାଗିଲେ ।

ଏହା ଦେଖି ବ୍ରାହ୍ମଣମାନେ ଭୀମଭୋଇଙ୍କ ବିପକ୍ଷରେ ଚକ୍ରାନ୍ତ କଲେ । ସେମାନେ ଦେଖିଲେ, ଭୀମ ଭୋଇଙ୍କ ନୂତନ ଧର୍ମ ଗ୍ରହଣ କରିବା ଫଳରେ ସେମାନଙ୍କ ସ୍ୱାର୍ଥରେ ବାଧା ପଡ଼ୁଛି । ସେମାନେ ସୋନପୁର ରାଜ୍ୟର ରାଜାଙ୍କ ଆଗରେ ଭୀମ ଭୋଇଙ୍କ ବିରୁଦ୍ଧରେ ଅଭିଯୋଗ କଲେ । ସେମାନେ କହିଲେ, ଭୀମଭୋଇ ଆସି ସୋନପୁର ରାଜ୍ୟର ଧର୍ମକର୍ମ ବୁଡ଼ାଇଲା । ଦେବଦେବୀ ମାନୁ ନାହିଁ । ବ୍ରାହ୍ମଣମାନେ ପଇତା ଛିଣ୍ଡାଇ ତା'ପାଖରେ ଶରଣ ପଶିଲେଣି । ଗୃହଆଢ଼ୁ ରାଜ୍ୟ ଓ ରାଜାଙ୍କର ନିନ୍ଦା ରଟନା ହେଲାଣି ।

ସୋନପୁର ରାଜ୍ୟର ରାଜା ଏହା ଶୁଣି 'ବନମାଳୀ ଦେବାନ'ଙ୍କୁ ପଠାଇ ଭୀମ ଭୋଇଙ୍କୁ ବନ୍ଦୀ କରାଇଲେ । ଭୀମ ଭୋଇ ବନ୍ଦୀଶାଳାରେ ପଡ଼ି ଅକଥନୀୟ କଷ୍ଟ ଭୋଗ କଲେ । ତା ପରେ ଆକସ୍ମିକ ଭାବରେ ସେ ଏହି ମରଣ ଯନ୍ତ୍ରଣାରୁ ଉଦ୍ଧାର ଲଭ କଲେ ।

## ଭୀମ ଭୋଇଙ୍କ ଶେଷ ଜୀବନ

ଭୀମ ଭୋଇଙ୍କ ଶେଷ ଜୀବନ ଅତୀବ ସୁଖମୟ ଥିଲା । ସେ ତାଙ୍କ ଜୀବନରେ ଅପୂର୍ବ ପ୍ରାପ୍ତି ବର୍ଣ୍ଣନା କରି ସ୍ତୁତି ଚିନ୍ତାମଣିରେ ଲେଖିଛନ୍ତି—

"ଶୁଣ ସୁଜ୍ଞଜନେ ଅପୂର୍ବ କାହାଣୀ
କହୁଅଛି ମୁହିଁ ଯେତେ ।
ଭୂତ ଭବିଷ୍ୟ ବର୍ତ୍ତମାନ ନ ଜାଣି
ଦୋଷ ଲଗାଉଛ ମୋତେ ॥
ଧନ ଦାରା ସୁତ ପାଇ ଆନନ୍ଦ ଏ
ମୋର କପାଳରେ ଥିଲା ।
ପୂର୍ବ କମାଣି ଫଳ ଭୁଞ୍ଜୁ ଅଛି
କାହାର ବା କସ ଗଲା ॥

ସତ୍ୟ ଧର୍ମ ସିନା ଅରଜ ଥିବାରୁ
ତତ୍ତ୍ୱରେ ପାଇଲ ମୁହିଁ ।
ଆମ୍ଭ ନିଧି ଆମ୍ଭ ହସ୍ତକୁ ଅଇଲ
ଏଥିରେ ସଂଶୟ ନାହିଁ ।।
ପୂର୍ବରୁ ଆମ୍ଭର ଘତ ବଉ ରଖି
ଥିବାରୁ ହେଲା ପ୍ରାପତ ।
ପକାଇ ଦିଅ ଧର୍ମ ସଭା ମଣ୍ଡଳେ
ଅବଶ୍ୟ ବୋଲିବେ ସତ ।।
ଆମ୍ଭର ଅର୍ଜିଲା ଧନରତ୍ନ ସିନା
ଆମ୍ଭଙ୍କୁ ହେଉଛି ଭୋଗ ।
କର୍ମରେ ନ ଥିଲେ କୁଆଡ଼ୁ ଫଳିବ
କେମନ୍ତେ ହେବ ସଂଯୋଗ ।।
ବିନା କମାଣିରେ ବିନା କପାଳରେ
କେଉଁ ଫଳ ଫଳେ ଦେଖ ।
ଭେଦକୁ ନ ବୁଝି ପଣ୍ଡିତ ସୁଜନେ
କିମ୍ପା ହେଉଅଛ ମୂର୍ଖ ?"

ସାମାଜିକ କ୍ଷେତ୍ରରେ ପରିବର୍ତ୍ତନ ଆଣିବା ପାଇଁ ଭୀମ ଭୋଇ ମହିମା ଧର୍ମ ଗ୍ରହଣ କରିଥିଲେ । ଧର୍ମ କ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ ଆଣିବା ପାଇଁ ସେ ମହିମା ଧର୍ମ ସଂଗଠନରେ ନୂତନ ବାଟ ଫିଟାଇଲେ । ସେ ଗୃହସ୍ଥାଶ୍ରମରେ ଥାଇ ମଧ୍ୟ ପ୍ରଚଳିତ ବୈଷ୍ଣବ ଧର୍ମର ସାଧୁଙ୍କ ପରି ଭକ୍ତମାନଙ୍କୁ ମହିମା ଧର୍ମର ଦୀକ୍ଷା ପ୍ରଦାନ କଲେ । ସେ ଭୋଗ ଓ ତ୍ୟାଗକୁ ସମାନ ସ୍ତରରେ ରଖି ଘୋଷଣା କଲେ—

"ନାମଟି ଅକ୍ଷୟ ଅଜନ୍ମ ଅଜୟ
ଗୁରୁ ମୁଖେ ଯେବେ ସତ୍ୟ ।
ଶୂନ୍ୟେ ଥାଇ ବିହିତ କର୍ମେ ଗୁରୁ କଲେ
ସବୁ ହେବ ପରାପତ ।। ୨୯ ।। ୧୭
ସତ୍ୟ ଯେବେ ମୁହିଁ ଜନମ ଲଭିଛି
ବ୍ରହ୍ମ ତେଜ କଳା ଧେନ ।
ନିର୍ବାଣ ବେଳେ ନିଶ୍ଚେ ସେ ଠାବକୁ ଯିବ
ଭୀମ ଅରକ୍ଷିତ ଭଣି ।।" । ୨୯ । ୨୦

ଭୀମ ଭୋଇଙ୍କ ନିମ୍ନଲିଖିତ ମହତ୍ ବାଣୀ ତାଙ୍କୁ କେବଳ ଓଡ଼ିଶା କିମ୍ବା ଓଡ଼ିଆ ସାହିତ୍ୟ ନୁହେଁ, ସମଗ୍ର ବିଶ୍ୱ ସାହିତ୍ୟରେ ଅମର କରିଛି—

"ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ
ଦେଖୁ ଦେଖୁ କେବା ସହୁ ।
ମୋ ଜୀବନ ପଛେ ନର୍କେ ପଡ଼ିଥାଉ
ଜଗତ ଉଦ୍ଧାର ହେଉ ।।

କବି ଭୀମ ଭୋଇ ତାଙ୍କ ଜୀବନ କାଳ ମଧ୍ୟରେ ଅସଂଖ୍ୟ ଭଜନ, ଜଣାଣ, ଚଉତିଶା, ଗ୍ରନ୍ଥ ଆଦି ରଚନା କରିଥିଲେ । ତନ୍ମଧ୍ୟରୁ ନିମ୍ନଲିଖିତ ଗ୍ରନ୍ଥମାନ ପ୍ରକାଶ ପାଇଛି ।

❋ ଶ୍ରୁତି ନିଷେଧ ଗୀତା
❋ ନିର୍ବେଦ ସାଧନ
❋ ଆଦି ଅନ୍ତ ଗୀତା
❋ ଅଷ୍ଟକ ବିହାରୀ ଗୀତା
❋ ବ୍ରହ୍ମ ନିରୂପଣ ଗୀତା
❋ ଭଜନ ମାଳା ( ୩୧୨ଟି ଭଜନ )
❋ ବ୍ରହ୍ମ ଚୁଳିକ
❋ ପଦ୍ମକଳ୍ପ
❋ ସ୍ତୁତି ଚିନ୍ତାମଣି
❋ ଚଉତିଶା ମଧୁଚନ୍ଦ୍ର ( ୪୧ଟି ଚଉତିଶା )

ଏ ସମସ୍ତ ପ୍ରକାଶିତ ଗ୍ରନ୍ଥମାନଙ୍କ ମଧ୍ୟରେ ଭୀମ ଭୋଇଙ୍କ 'ସ୍ତୁତି ଚିନ୍ତାମଣି' ଗ୍ରନ୍ଥ ତାଙ୍କ ରଚନାବଳୀ ମଧ୍ୟରେ ସର୍ବଶ୍ରେଷ୍ଠ ବିବେଚିତ ହୋଇଥାଏ ।

କବି ଭୀମ ଭୋଇ ୧୮୯୫ ମସିହା ଶିବ ଚତୁର୍ଦ୍ଦଶୀ ଦିନ ତାଙ୍କର ସାଧନା ପୀଠ ଖଲିଆପାଲି ଆଶ୍ରମରେ ଇହଲୀଳା ସମ୍ବରଣ କଲେ । ବର୍ତ୍ତମାନ ସେଠାରେ ଭୀମ ଭୋଇଙ୍କ ସମାଧି ମନ୍ଦିର ତିଆରି ହୋଇଛି । ମନ୍ଦିର ମଧ୍ୟରେ ଭୀମ ଭୋଇଙ୍କ ପାଖରେ ଦେବୀ ଅନ୍ନପୂର୍ଣ୍ଣା ମଧ୍ୟ ଚିର ନିଦ୍ରାରେ ନିମଗ୍ନା ଅଛନ୍ତି ।

ଅବଶେଷରେ ଓଡ଼ିଆ ଭାଷା ସାହିତ୍ୟର ଦିଗ୍‌ଦର୍ଶକ ଗବେଷକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କର 'ସ୍ତୁତି ଚିନ୍ତାମଣି'ର ମୁଖବନ୍ଧର ମନ୍ତବ୍ୟକୁ ଉଦ୍ଧାର କରି ଏ ପୁସ୍ତିକାର ଉପସଂହାର କରୁଛି ।

"ଏହି ଭୀମ ! ଏବଂ ଏଥି ସେ ପ୍ରତିଭାତ ! ଉତ୍କଳ ! ଏହି କବିର ସମ୍ବର୍ଦ୍ଧନା କର । ନିଜର ମହତ୍ତ୍ୱର ସ୍ତରକୁ ଉଚ୍ଚରୁ ଉଚ୍ଚକୁ ଉତ୍ତୋଳନ କର । ଉତ୍କଳ ଜାତିର ଟେକ ଓ ଗୌରବ ରକ୍ଷା କରିବାରେ ପଶ୍ଚାତ୍ପଦ ବୋଲି ମନେ ହୁଏ, ତାହା କରିଥିଲେ, ନିଜର କଥା କହି ଜାଣିଥିଲେ, ଏପରି ଉପେକ୍ଷିତ, ଅନାଦୃତ ହୋଇ ନ ଥାନ୍ତା । ଲୋକେ ତିଳକୁ ତାଳ କରନ୍ତି, ମୁଁ ତାଳକୁ ତିଳ ସୁଦ୍ଧା କରି ନ ପାରି ଦୁଃଖିତ । ଶେଷରେ ପଦେ କଥା, **ଭୀମ ମହାତ୍ମା ।**"

**ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି**

୧ । ୨ । ୧୯୨୫

---